# ଆଧୁନିକ ଓଡ଼ିଶାର ନିର୍ମାତା
# କୃଷ୍ଣଚନ୍ଦ୍ର ଗଜପତି



ବିକ୍ରମଚଣ୍ଡ ଆଗ୍ରୁର୍ଦ୍ଧ

# ଆଧୁନିକ ଓଡ଼ିଶାର ନିର୍ମାତା
# କୃଷ୍ଣଚନ୍ଦ୍ର ଗଜପତି



ବିକ୍ରମଚରଣ ଆଗୁର୍ଦ୍ଧ

# ଆଧୁନିକ ଓଡ଼ିଶାର କର୍ମୀ

# କୃଷ୍ଣଚନ୍ଦ୍ର ଗଜପତି

ଲେଖକ

ବିକ୍ରମ ଚନ୍ଦ୍ର ଆଚାର୍ଯ୍ୟ

ପ୍ରକାଶକ

ଜଗନ୍ନାଥ ରଥ

ବିନୋଦବିହାରୀ, କଟକ

ନୂତନ ମୁଦ୍ରଣ
୧୯୮୮

ମୂଲ୍ୟ—୪-୦୦ ଟଙ୍କା

ମୁଦ୍ରାକର

ରବୀନ୍ଦ୍ରନାଥ ପଣ୍ଡା

ବାସନ୍ତୀ ଦୁର୍ଗା ପ୍ରିଣ୍ଟର୍ସ

ଖଟବିନସାହି, କଟକ-୮

# ଆଧୁନିକ ଓଡ଼ିଶାର ନିର୍ମାତା
# କୃଷ୍ଣଚନ୍ଦ୍ର ଗଜପତି

# ମୋର କହିବା କଥା

ସାହିତ୍ୟ କ୍ଷେତ୍ରରେ ଆତ୍ମ ଜୀବନୀ ପାଠ କରିବାର ସ୍ୱାଦ ଭିନ୍ନ । ଏହି ଆତ୍ମ ଜୀବନୀରୁ ଏପରି ପ୍ରକାର ସନ୍ତୋଷ ମିଳେ, ଯାହା'କି ଅନ୍ୟାନ୍ୟ କ୍ଷେତ୍ରରେ ବିରଳ । ଏଥିରୁ ମିଳେ କର୍ମ ପ୍ରେରଣା ଏବଂ ଉତ୍ସାହ । ଏହିଭଳି କେତେଜଣ ଦେଶ ହିତୈଷୀ ତଥା ବୀର ପୁରୁଷମାନଙ୍କ ଜୀବନୀ ପାଠ କରିବା ସମୟରେ ଆମର ଗ୍ରନ୍ଥି ହୋଇଉଠେ ରୁଣ୍ଟେମୋଞ୍ଚ ଏବଂ ଆମର ଦେହରେ ଖେଳିଯାଏ ଉଷ୍ମ ରକ୍ତର ପ୍ରବାହ ।

ସ୍ୱର୍ଗୀୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ଜୀବନୀ ନାନା ଅଲୌକିକ ଘଟଣାବଳୀରେ ପରିପୂର୍ଣ୍ଣ । ତାଙ୍କର ତେଜସ୍ୱୀ ମନୋଭାବ, କର୍ମ ପ୍ରବଣତା, ନିର୍ଭୀକତା ତଥା ଉଚ୍ଚ ଆଶା ଆକାଂକ୍ଷାର ଯେଉଁ ସ୍ପୃହା ସେ ଦେଖାଇ ଯାଇଛନ୍ତି ତାହା ଓଡ଼ିଆ ଜାତି ତଥା ଓଡ଼ିଶାବାସୀଙ୍କ ପକ୍ଷରେ ଚିର ସ୍ମରଣୀୟ ଏବଂ ଉଲ୍ଲେଖନୀୟ ଘଟଣା ହୋଇ ରହିଛି ଏବଂ ରହିବ ।

କର୍ତ୍ତବ୍ୟ ପ୍ରତି ନିଷ୍ଠାବାନ ହୋଇ ଓଡ଼ିଆ ଜାତି ଏବଂ ଓଡ଼ିଶାର ପତୋନ୍ମୁଖୀ ଗୌରବମାନଙ୍କୁ ପୁଣି ପ୍ରତିଷ୍ଠିତ କରିବାପାଇଁ ଏବଂ ସମୃଦ୍ଧ, ସମର୍ଥ ଓ ଉନ୍ନତ କରିବା ପାଇଁ ଓଡ଼ିଶା ପ୍ରଦେଶ ଗଠନରେ ସ୍ୱତନ୍ତ୍ରତାର ପ୍ରକୃତ ଅର୍ଥ ବୁଝାଇଥିଲେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି । ଯାହାଦ୍ୱାରା ସେ ଦେଶର ଉଜ୍ଜ୍ୱଳ ଭବିଷ୍ୟତର ମୂଳଦୂଆକୁ ସୁଦୃଢ଼ କରିବାରେ ସଫଳ ହୋଇ ପାରିଥିଲେ ।

ମହାରାଜାଙ୍କ ମୃତ୍ୟୁ ସହିତ ଓଡ଼ିଶା ଇତିହାସରେ ଏକ ଯୁଗ ସମାପ୍ତ ଘଟିଛି କହିଲେ ଯଥାର୍ଥ ହେବ । ସ୍ୱର୍ଗତ ମହାରାଜା ଥିଲେ ଓଡ଼ିଆ ଜାତିର ସ୍ଥିତି ସଂସ୍ଥାପକ, ଏଣୁ ଓଡ଼ିଆ ଜାତିର ଇତିହାସରେ ତଥା ଭୌଗୋଳିକ ଏକୀକରଣ ପାଇଁ ତାଙ୍କର ଦାନ ଅତୁଳନୀୟ, ଏତଦ୍ ବ୍ୟତୀତ ସେ ଥିଲେ ଜଣେ ଉଚ୍ଚକୋଟୀର ଆଦର୍ଶ ପୁରୁଷ । ଅନ୍ୟର ଦୁଃଖରେ ନିଜ ସମ ଦୁଃଖୀହେବା, ଶେଷଜୀବନ ପର୍ଯ୍ୟନ୍ତ ଅନ୍ୟକୁ ସାହାଯ୍ୟ କରିବା ଥିଲା ତାଙ୍କର ପରମଧର୍ମ ।

ଆଜି ଆମର ସେହି ପୂଜ୍ୟ ଏବଂ ନମସ୍ୟ ବ୍ୟକ୍ତି ସ୍ୱର୍ଗୀୟ ମହାରାଜା ଗଜପତିଙ୍କୁ ବିନମ୍ର ନିବେଦନ, ସେ ସ୍ୱର୍ଗରେ ଥାଇ ଦେଶର ତଥା ଏହି ଓଡ଼ିଆ ଜାତିର କଲ୍ୟାଣ ପାଇଁ ଶୁଭ ଦୃଷ୍ଟି ରଖିଥାଆନ୍ତୁ ।

କୃଷ୍ଣଚନ୍ଦ୍ର ଗଜପତିଙ୍କ ଭଳି ଜଣେ ଯୁଗଜନ୍ମା ମହାପୁରୁଷଙ୍କ ଜୀବନାଦର୍ଶ ଉପରେ କିଞ୍ଚିତ ଆଲୋକପାତ କରିବା ପାଇଁ ମୁଁ ଏକ ବିନମ୍ର ଉଦ୍ୟମ କରିଛି ମାତ୍ର ।

ଏହି କ୍ଷୁଦ୍ର ପୁସ୍ତକ ଖଣ୍ଡିକ ରଚନା କରିବା ଦିଗରେ ଯେଉଁ କେତେଜଣ ସହୃଦୟ ବନ୍ଧୁ ମୋତେ ପ୍ରେରଣା ଯୋଗାଇଛନ୍ତି; ସେମାନଙ୍କ ମଧ୍ୟରେ ମାନ୍ୟାସ୍ପଦ ଡକ୍ଟର ପି. ଶଙ୍କର ନାରାୟଣ ପାତ୍ର, ପ୍ରଫେସର ଭଞ୍ଜନଗର କଲେଜ (ଗଞ୍ଜାମ) ହେଉଛନ୍ତି ଅନ୍ୟତମ । ଏହା ତାଙ୍କ ବହୁମୂଲ୍ୟ ପ୍ରସ୍ତାବଟିର ସଫଳ ରୂପାୟନ ମାତ୍ର । ଏଣୁ ମୁଁ ତାଙ୍କ ନିକଟରେ କୃତଜ୍ଞତା ରଖିବା ସଙ୍ଗେ ସଙ୍ଗେ ସବୁଦିନ ପାଇଁ ଏହିଭଳି ଶୁଭ ଦୃଷ୍ଟି ମୋ ଉପରେ ରଖିବେ ବୋଲି ପ୍ରାର୍ଥନା ।

ବିନୀତ
ଲେଖକ

## ପଦେ ଅଧେ

ଆଧୁନିକ ଓଡ଼ିଶାର ନିର୍ମାତା କୃଷ୍ଣଚନ୍ଦ୍ର ଗଜପତିଙ୍କ ଜୀବନୀ ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ତାଙ୍କର ଅବଦାନ ସମ୍ପର୍କରେ ପାଠକଙ୍କୁ ଅଭିହିତ କରାଇବା ପାଇଁ ଶ୍ରୀ ଆଚାର୍ଯ୍ୟଙ୍କ ଉଦ୍ୟମ ବୋଧହୁଏ ନୂତନ ଏବଂ ପ୍ରଣିଧାନ ଯୋଗ୍ୟ ଅଟେ ।

ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଏ ଜାତିର ନମସ୍ୟ ଅଟନ୍ତି । ବିଖଣ୍ଡିତ ଓଡ଼ିଶାର ଏକତ୍ରୀକରଣ ପାଇଁ ସେ ଯେଉଁ ତ୍ୟାଗ ସ୍ୱୀକାର କରିଥିଲେ ତାହା ସବୁଦିନ ପାଇଁ ଅବିସ୍ମରଣୀୟ ହୋଇ ରହିବ । ଏକ ସଂକ୍ଷିପ୍ତ କଳେବର ଭିତରେ ଶ୍ରୀ ଆଚାର୍ଯ୍ୟ ଗଜପତିଙ୍କ ଅବଦାନ ସମ୍ପର୍କରେ ଏକ ସୁନ୍ଦର ଅନୁଶୀଳନ କରିପାରିଛନ୍ତି ।

ମଧୁସୂଦନ, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଓ ଅନ୍ୟାନ୍ୟ ପ୍ରବୀଣ ଦେଶ ସେବୀ ନେତାମାନେ ସ୍ୱତନ୍ତ୍ର ଓଡ଼ିଶା ନିର୍ମାଣ ପାଇଁ ଅବିଶ୍ରାନ୍ତ ଭାବେ ଚେଷ୍ଟା କରିଥିଲେ । କିନ୍ତୁ ଗଜପତିଙ୍କ ରଚନାତ୍ମକ ନେତୃତ୍ୱ ସେମାନଙ୍କର ଏକତ୍ରୀକରଣ ଆନ୍ଦୋଳନ ପାଇଁ ଯଥେଷ୍ଟ ପ୍ରୟୋଜନ ଯୋଗାଇ ପାରିଥିଲା । ଗଜପତି ଗୋଲଟେବୁଲ ବୈଠକରେ ଯେଉଁ ବକ୍ତୃତା ଦେଇଥିଲେ, ସେହି ବକ୍ତୃତା ସ୍ୱତନ୍ତ୍ର ଓଡ଼ିଶାର ପ୍ରତିଷ୍ଠାକୁ ତ୍ୱରାନ୍ୱିତ କରିଥିଲା । ଓଡ଼ିଶା ଗଠନ ପୂର୍ବରୁ ଓ ପରେ ଗଜପତି ଏକ ଗଠନମୂଳକ ନେତୃତ୍ୱ ଯୋଗାଇ-ଥିଲେ । ଓଡ଼ିଶା ଗଠନ ଆନ୍ଦୋଳନର ପ୍ରତ୍ୟେକ ପର୍ଯ୍ୟାୟରେ ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ତ୍ୟାଗକରି ସେ ନିଜକୁ ଜଡ଼ିତ କରାଇଥିଲେ । ଏଥିପାଇଁ ରାଜକୋଷରୁ ଅଜସ୍ର ଅର୍ଥଦାନ କରି ସେ ଯେଉଁ ଇତିହାସ ସୃଷ୍ଟି କରିଛନ୍ତି, ତାହାର ପଟାନ୍ତର ନାହିଁ । ଓଡ଼ିଶା ଗଠନ ପରେ ମଧ୍ୟ ଏହାର ସର୍ବାଙ୍ଗୀନ ବିକାଶ ପାଇଁ ସେ ସାମାଜିକ, ଅର୍ଥନୈତିକ, ଶିକ୍ଷାଗତ, ସାଂସ୍କୃତିକ କ୍ଷେତ୍ରରେ ଉପଯୁକ୍ତ ନେତୃତ୍ୱ ପ୍ରଦର୍ଶନ କରିପାରିଥିଲେ ।

ଗଜପତି ଜାତିକୁ ସ୍ଥିତି ଯୋଗାଇଛନ୍ତି । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଆଶାକରେ ଶ୍ରୀ ଆଚାର୍ଯ୍ୟଙ୍କ ଉଦ୍ୟମଟି ସମସ୍ତଙ୍କ ନିକଟରେ ପହଞ୍ଚିବ ଓ ସହୃଦୟ ପାଠକ ବୃନ୍ଦ ଗଜପତିଙ୍କ ସମ୍ପର୍କରେ ଏକ ସମ୍ୟକ ଧାରଣା ପାଇପାରିବେ ।


ଡକ୍ଟର ପି. ଶଙ୍କର ନାରାୟଣ ପାତ୍ର<br>
ଅଧ୍ୟାପକ, ରାଜନୀତି ବିଜ୍ଞାନ ବିଭାଗ<br>
କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟ

ପ୍ରଗତିଶୀଳ ଚେଷ୍ଟାର ଗତିରୋଧ ହୋଇନପାରେ । ସମ୍ୟକ ରୂପେ କୌଣସି କାର୍ଯ୍ୟ ଆରମ୍ଭ କଲେ ଯେପରି କ୍ଷୁଦ୍ର ଅଗ୍ନିକଣିକାରେ ଦୀପମାଳା ପ୍ରଜ୍ୱଳିତ, ସେହିପରି ବିକଶିତ ହୋଇପାରେ ।

କୃଷ୍ଣଚନ୍ଦ୍ର ଗଜପତିଙ୍କର ଜୀବନରେ ଏହି ଭାବ ଦେଖା ଦେଇ-ଥିଲା ।

ପରାଧୀନତାର ନାଗଫାଶରୁ ଅନନ୍ତ ପ୍ରିୟ ଓଡ଼ିଶା ପ୍ରଦେଶକୁ ସ୍ୱତନ୍ତ୍ର କରିବା ପାଇଁ ସେ ନେଇଥିଲେ ଦୃଢ଼ ଶପଥ । ଦେଶର ଅଗଣିତ ଯୁବକଙ୍କ ହୃଦୟରେ ବ୍ରିଟିଶ-ବିରୋଧୀ ମନୋଭାବ ସୃଷ୍ଟି କରିବା ନିମିତ୍ତ ସେ ପ୍ରବଳ ଉଦ୍ୟମ କରିଥିଲେ । ସୁଚିନ୍ତିତ ଯୋଜନା ନ କରି ସେ କୌଣସି କାର୍ଯ୍ୟରେ ଅଗ୍ରସର ହେଉନଥିଲେ ।

ସ୍ୱର୍ଗତ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଆଦର୍ଶମୟ ଜୀବନୀ ଆଲୋଚନା କରିବା ପୂର୍ବରୁ ଯେଉଁ ଓଡ଼ିଶାର ପାଣି ପବନରେ ତାଙ୍କର ଶରୀର ଓ ମନ ପୁଷ୍ଟ ହୋଇଥିଲା, ପ୍ରଥମେ ତାହାର ଏକ ସଂକ୍ଷିପ୍ତ ଇତିହାସର ଏକ ସମ୍ୟକ ଆଲୋଚନା କରିବା ଏକାନ୍ତ ଆବଶ୍ୟକ ।

ଆଜିକାର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଆଲୋଚନାର ସୂତ୍ରପାତ ହୁଏ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଓଡ଼ିଆ ଭାଷାର ରକ୍ଷକ ଭିନ୍ନ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ପରିଚାଳିତ ହୋଇ ଏକ ବିରାଟ ମୃତ୍ୟୁକାଳୀନ ସଙ୍କଟର ସମ୍ମୁଖୀନ ହେଲା । ଗଞ୍ଜାମ ଜିଲ୍ଲା ଥିଲା ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟଙ୍କ ହାତରେ । କଟକ, ପୁରୀ, ବାଲେଶ୍ୱର ରହିଲା ବଙ୍ଗଳାରେ ଏବଂ ସମ୍ବଲପୁର

ରହିଲା କେନ୍ଦ୍ର ଅଞ୍ଚଳରେ । ଯାହା ଦ୍ୱାରା କି ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରଥାର ପ୍ରଚଳନ, ଭିନ୍ନ ଭିନ୍ନ ପୁସ୍ତକର ପଠନ କରାଗଲା । କୌଣସି ସଠିକ ନିୟମ, ଭଲ ମନ୍ଦର ପ୍ରଶ୍ନ ଉଠିଲା ନାହିଁ । ଏହିପରି ଭାବରେ ଅନେକ ବିଶୃଙ୍ଖଳା ଦେଖାଗଲା ।

ଇତିହାସର ପୃଷ୍ଠା ଓଲଟାଇଲେ ଜଣାପଡ଼େ ଯେ ମୁସଲମାନ ଓ ମରହଟ୍ଟା ଶାସନର ପରିସମାପ୍ତି ପରେ ଓଡ଼ିଶା ଇଷ୍ଟଇଣ୍ଡିଆ କମ୍ପାନୀର ଶାସନାଧୀନ ହେବା ଫଳରେ, ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ବିଭିନ୍ନ ପ୍ରାଦେଶିକ ଶାସନ ଦ୍ୱାରା ପରିଚାଳିତ ହୋଇ ଓଡ଼ିଆ-ମାନଙ୍କର ଶିକ୍ଷା ସଂସ୍କୃତି ଓ ସଭ୍ୟତା କ୍ଷେତ୍ରରେ ଘୋର ବିପଦର ସମ୍ମୁଖୀନ ହୋଇଥିଲା । ଦୁଇ ନାଆରେ ଗୋଡ଼ ଦେଲେ ଯାହା ହୁଏ ଭିନ୍ନ ଭିନ୍ନ ଅଞ୍ଚଳରେ ବାସ କରୁଥିବା ଓଡ଼ିଆମାନଙ୍କର ଅବସ୍ଥା ମଧ୍ୟ ସେହିପରି ହେଲା । କାଳକ୍ରମେ ସେମାନେ ଜାତୀୟତା ହରାଇବାକୁ ବସିଲେ । ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବିହାର ଏବଂ ବଙ୍ଗଳା ଏହିପରି ଚାରୋଟି ସ୍ଥାନରେ ଉପେକ୍ଷିତ ଓ ପ୍ରପିଡ଼ିତ ହୋଇ ଓଡ଼ିଆମାନେ ହନ୍ତସନ୍ତ ହୋଇ ଯାଇଥିଲେ ।

୧୮୦୩ ସାଲରେ ଇଂରେଜମାନେ ପୁରୀ, କଟକ ଏବଂ ବାଲେଶ୍ୱର ଜିଲ୍ଲାକୁ ମରହଟ୍ଟାମାନଙ୍କଠାରୁ ଛଡ଼ାଇ ଆଣିଲେ । କିନ୍ତୁ ସମ୍ବଲପୁର ଜିଲ୍ଲା ଯାହାକି ଥିଲା ଓଡ଼ିଆମାନଙ୍କର ମୁଖ୍ୟସ୍ଥଳ ତାହା ରହିଲା ନାଗପୁରର ମରହଟ୍ଟା ଭୋସଲାଙ୍କ ହାତରେ ୧୮୬୨ ପର୍ଯ୍ୟନ୍ତ । ତାପରେ ଇଂରେଜମାନଙ୍କ ହାତକୁ ଆସି କେନ୍ଦ୍ର ଶାସିତ ଅଞ୍ଚଳରେ ରହିଲା ୧୯୦୫ ପର୍ଯ୍ୟନ୍ତ ।

ଇଷ୍ଟଇଣ୍ଡିଆ କମ୍ପାନୀ ୧୮୦୩ ଖ୍ରୀଷ୍ଟାବ୍ଦରୁ ୧୮୫୮ ପର୍ଯ୍ୟନ୍ତ ୫୫ ବର୍ଷ କାଳ ଓଡ଼ିଶାକୁ ଶାସନ କଲେ । ସେହି ୫୫ ବର୍ଷ କାଳ ଓଡ଼ିଶା ଥିଲା ଅବହେଳିତ ଓ ଉପେକ୍ଷିତ । ଏହି କମ୍ପାନୀର ରାଜତ୍ୱ କାଳରେ, କମ୍ପାନୀର ଅଫିସର ଏବଂ କର୍ମଚାରୀଗଣ ଓଡ଼ିଆମାନଙ୍କୁ ଘୃଣା ଚକ୍ଷୁରେ ଦେଖୁଥିଲେ ଯାହାଫଳରେ ଓଡ଼ିଆମାନେ ଅଭାବ ଅନାଟନରେ ପଡ଼ି ଛଟପଟ ହେଉଥିଲେ ।

ଫଳେ ଓଡ଼ିଆମାନଙ୍କର ଅକ୍ଲାନ୍ତ ପରିଶ୍ରମର ଫଳ ସ୍ୱରୂପ ୧୯୦୩ ସାଲରେ ଇଂରେଜମାନେ ସବୁ ଓଡ଼ିଆଭାଷୀ ଅଞ୍ଚଳକୁ ଏକାଠି କରି ଗୋଟିଏ ଶାସନ ଅଧୀନକୁ ଆଣିବା ପ୍ରସ୍ତାବକୁ ନୀତିଗତ ଭାବରେ ଅନୁମୋଦନ କଲେ । ସାର୍ ଏଣ୍ଡ୍ରୁ ଫ୍ରାସେର୍‌ଙ୍କ ଅନୁମୋଦନ ଫଳେ ସମ୍ବଲପୁର ଜିଲ୍ଲା ଓଡ଼ିଶା ସହିତ ମିଶିଲା । କିନ୍ତୁ ଗଞ୍ଜାମ ଓ ଜୟପୁର ମାନ୍ଦ୍ରାଜ ସରକାରଙ୍କ ଠାରୁ ଅଲଗା ହୋଇପାରିଲା ନାହିଁ ।

ସେହି ସମୟରେ ମଧୁସୂଦନ ଦାସଙ୍କ ପୌରହିତ୍ୟରେ ୧୯୦୩ ମସିହାରେ "ଉତ୍କଳ ସମ୍ମିଳନୀ" ଗଠନ କରାଗଲା । ସମସ୍ତ ଓଡ଼ିଆଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରିବା ପାଇଁ ଏହା ଓଡ଼ିଶାର ଏକ ଜାତୀୟ ସମ୍ମିଳନୀ ରୂପେ ଅବତୀର୍ଣ୍ଣ ହୋଇଥିଲା ।

ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେ ବାହାଦୁର ଭାରତ ସରକାରଙ୍କୁ ଏକ ଆବେଦନ ପତ୍ର ଲେଖି ପଠାଇଥିଲେ । ସେଥିରେ ଲେଖା ଥିଲା "ଉତ୍କଳ ଖଣ୍ଡ ନିମନ୍ତେ ଗୋଟିଏ ପୃଥକ୍ ପ୍ରାଦେଶିକ ଶାସନ ଗଠିତ ହେଉ ଅଥବା ବଙ୍ଗ, ମାନ୍ଦ୍ରାଜ ବା ମଧ୍ୟପ୍ରଦେଶରୁ କୌଣସି ଏକ ଶାସନାଧୀନରେ ସମସ୍ତ ଉତ୍କଳଖଣ୍ଡକୁ ରଖାଯାଉ ।"

(ଉତ୍କଳ ଦୀପିକା—ତା ୨୧ ଫେବୃୟାରୀ, ୧୯୦୩)

ଖୋର୍ଦ୍ଧାରେ ୧୮୧୭ରେ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ଏକ ପାଇକ ବିଦ୍ରୋହର ସୂତ୍ରପାତ ହୋଇଥିଲା । ସେହି ବିଦ୍ରୋହରେ ଶହ ଶହ ପାଇକ ଯୋଗଦେଇ ବ୍ରିଟିଶ ସରକାରର କଡ଼ା ଶାସନ ବ୍ୟବସ୍ଥାକୁ ଟଳମଳ କରିଦେଇଥିଲେ କିଛି ସମୟ ପାଇଁ । ଏହି ଯୁଦ୍ଧକୁ ଦମନ କରିବା ପାଇଁ ଇଂରେଜ ସରକାର ଆପ୍ରାଣ ଚେଷ୍ଟା କରିଥିଲା । ଏହି ଯୁଦ୍ଧରୁ ହିଁ ଇଂରେଜ ସରକାରଙ୍କ ଆଖି ଖୋଲି ଯାଇଥିଲା ଏବଂ ସେ ଅନୁଭବ କରିଥିଲେ ଯେ ତାଙ୍କ ଶାସନ ପରିଚାଳନାରେ କିଛି ତ୍ରୁଟି ରହିଛି ।

୧୮୫୭ ସାଲରେ ବ୍ରିଟିଶ ଶାସନ ବିରୋଧରେ ଏକ ଦେଶବ୍ୟାପି ଆନ୍ଦୋଳନ ଆରମ୍ଭ ହେଲା । ଯାହାକୁ ବ୍ରିଟିଶ ସିପାହୀବିଦ୍ରୋହ ନାମରେ ଆଖ୍ୟା ଦେଇଥିଲେ; କିନ୍ତୁ ପ୍ରକୃତରେ ଏହା ଥିଲା ସ୍ୱାଧୀନତାର ପ୍ରଥମ ଆନ୍ଦୋଳନ । ସମ୍ବଲପୁରର ଅନ୍ୟତମ ପ୍ରଧାନ ବିପ୍ଳବୀ ବୀର ସୁରେନ୍ଦ୍ର ସାଏ ନିଜକୁ ସେହି ଆନ୍ଦୋଳନରେ ସାମିଲ କରିଥିଲେ । ଶେଷରେ ସେ ବନ୍ଦୀ ଅବସ୍ଥାରେ ୧୮୮୪ ସାଲରେ ମୃତ୍ୟୁବରଣ କଲେ ।

୧୮୬୮ ସାଲରେ ସାର୍ ଷ୍ଟାଫରଡ଼ ନର୍ଥ କୋଟ୍ ପ୍ରସ୍ତାବ କଲେ ଯେ ଓଡ଼ିଶା ଏବଂ ଆସାମ, ବଙ୍ଗଳାରୁ ଅଲଗା କରାଯାଉ । ୧୮୭୪ ସାଲରେ ଆସାମକୁ ଏକ ସ୍ୱତନ୍ତ୍ର ଅଞ୍ଚଳ କରାଗଲା; କିନ୍ତୁ ଓଡ଼ିଶା ହୋଇ ପାରିଲା ନାହିଁ ।

ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ଏବଂ ବିଚିତ୍ରାନନ୍ଦ ଦାସ ସରକାରଙ୍କୁ ଏକ ଲିଖିତ ପତ୍ରରେ ଜଣେଇଲେ ଯେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳକୁ ଏକାଠି କରି ଗୋଟିଏ ଶାସନ ଅଧୀନରେ ରଖାଯାଉ । ୧୮୬୬ରେ ଶ୍ରୀ ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ "ଉତ୍କଳ ଦୀପିକା" ନାମରେ ଏକ ପତ୍ରିକା ପ୍ରକାଶ ଆରମ୍ଭ କରାଗଲା । ଏହି ପତ୍ରିକା ଥିଲା ଓଡ଼ିଶାର ପ୍ରଥମ ସମ୍ବାଦ ପତ୍ର ।

୧୮୮୨ ସାଲରେ "ଉତ୍କଳ ସଭା" ଗଠନ କରାଗଲା ଏବଂ ସେହି ବର୍ଷ ଡିସେମ୍ବର ୧୯ ତାରିଖରେ ଉତ୍କଳ ସଭା ମାଧ୍ୟମରେ କାଳୀପଦ ବାନାର୍ଜୀଙ୍କ ସଭାପତିତ୍ୱରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ବୈଠକରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ସେହି ପ୍ରସ୍ତାବରେ ସରକାରଙ୍କୁ ଚାପ ପକାଇ କୁହାଯାଇଥିଲା ଯେ ନିର୍ବାଚନ ପଦ୍ଧତି ଲାଗୁ କରାଯାଉ ।

୧୮୯୭ସାଲ ସେପ୍ଟେମ୍ବର ମାସରେ ମଧୁସୂଦନ ଦାସ "ଉତ୍କଳ ସଭା" ତରଫରୁ ଲଣ୍ଡନ ଯାତ୍ରା କଲେ । ଲର୍ଡ଼ ଜର୍ଜ ହାମିଲଟନ୍ ଯିଏକି ଭାରତର ସେକ୍ରେଟେରୀ ଭାବରେ ଲଣ୍ଡନଠାରେ ନିଯୁକ୍ତ ଥିଲେ ତାଙ୍କୁ ଦେଖା

କରି ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନ ଅଞ୍ଚଳ କଥା କହିଲେ । ଜର୍ଜ ହାମିଲଟନ୍‌ଙ୍କ ଉପଦେଶ ଅନୁସାରେ ମଧୁସୂଦନ ଦାସ ଓଡ଼ିଶାର ଉପଯୁକ୍ତ ଦାବି ଲର୍ଡ଼ କର୍ଜନଙ୍କ ପାଖରେ ଉପସ୍ଥାପିତ କଲେ ।

୧୯୦୨ ମସିହାରେ ଲର୍ଡ଼ କର୍ଜନ ଓଡ଼ିଶା ପରିଦର୍ଶନରେ ଆସିଲେ । ଗଞ୍ଜାମ ଜିଲ୍ଲାର ଲୋକମାନେ ଲର୍ଡ଼ କର୍ଜନଙ୍କ ପାଖରେ ତାଙ୍କର ଦାବିପତ୍ର ଉପସ୍ଥାପିତ କଲେ । ସେହି ଦାବିପତ୍ରରେ ସରକାରଙ୍କୁ ଅନୁରୋଧ କରାଯାଇ ଥିଲା ଯେ ବିଭିନ୍ନ ଜାଗାରେ ରହୁଥିବା ଓଡ଼ିଆ ଭାଷାଭାଷୀ ଲୋକମାନଙ୍କୁ ଏକାଠି ରହିବା ପାଇଁ ସୁଯୋଗ ଦିଆଯାଉ ।

୧୯୦୩ ସାଲରେ ଭାରତ ସରକାର ବଙ୍ଗଳାର ବିଭକ୍ତି ବିଷୟ ଚିନ୍ତାକଲେ । ଲର୍ଡ଼ କର୍ଜନଙ୍କ ଇଚ୍ଛା ଥିଲା ଯେ ସମସ୍ତ ଓଡ଼ିଆ ଅଞ୍ଚଳଗୁଡ଼ିକୁ ବଙ୍ଗଳା ଏବଂ ବିହାର ମଧ୍ୟରେ ସୀମିତ ରଖାଯାଉ ।

ମଧୁସୂଦନ ଦାସ ଅନୁଭବ କଲେ ଯେ ବିଭିନ୍ନ ଓଡ଼ିଆ ଭାଷୀ ଅଞ୍ଚଳ-ଗୁଡ଼ିକରେ ରାଜନୈତିକ ଚେତନା ଆଣିବା କଷ୍ଟକର ହେବ ଯେଉଁ ପର୍ଯ୍ୟନ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ବିଚ୍ଛିନ୍ନ ଭାବରେ ରହିଅଛନ୍ତି । ଉତ୍କଳ ସମ୍ମିଳନୀ ଡିସେମ୍ବର ୧୯୦୩ ସାଲରେ କଟକଠାରେ ଅନୁଷ୍ଠିତ ହୋଇଥିଲା । ସମ୍ମିଳନୀରେ ରାଜା, ମହାରାଜା, ଶ୍ରମିକ ଏବଂ କୃଷକମାନଙ୍କର ବହୁ ସମାଗମ ହୋଇଥିଲା । ଏହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ମୟୂରଭଞ୍ଜର ମହାରାଜ ।

୧୯୦୯ ସାଲରେ ମାନ୍ଦ୍ରାଜ ରାଜ୍ୟପାଳଙ୍କୁ ଏକ ଦାବିପତ୍ର ଦିଆଗଲା । ସେହି ଦାବିପତ୍ରରେ କୁହାଯାଇଥିଲା ଯେ ବିଭିନ୍ନ ଅଞ୍ଚଳରେ ରହୁଥିବା ଓଡ଼ିଆଭାଷାଭାଷୀ ଲୋକମାନଙ୍କୁ ଏକତ୍ରିତ କରି ରଖାଯାଉ । ସେହି ବର୍ଷ ଅଗଷ୍ଟ ମାସ ୧୨ ତାରିଖ ଦିନ ୧୯ଜଣ ଛାତ୍ରଙ୍କୁ ନେଇ ଉତ୍କଳମଣି ଗୋପବନ୍ଧୁ ଦାସ ସତ୍ୟବାଦୀ ସ୍କୁଲ ଆରମ୍ଭ କଲେ । ଏହା ପ୍ରସିଦ୍ଧ ସାକ୍ଷୀ-ଗୋପାଳ ମନ୍ଦିରର ପଛପାଖରେ ବକୁଳ ଗଛତଳେ ଆରମ୍ଭ କରାଗଲା । ଏହାର ନାମ ଥିଲା ବକୁଳ ବନ ବିଦ୍ୟାଳୟ ।

୧୯୧୧ ସାଲ ଅଗଷ୍ଟ ୨୫ ତାରିଖରେ ଭାରତ ସରକାର ପ୍ରସ୍ତାବ କଲେଯେ ବଙ୍ଗଳାରୁ ଅଲଗା କରାଯାଇ, ଛୋଟନାଗପୁର ସହିତ ବିହାର ଏବଂ ଓଡ଼ିଶାକୁ ଅଲଗା ପ୍ରଦେଶ କରାଯାଉ ।

ବିହାର ଏବଂ ଓଡ଼ିଶା ପ୍ରଦେଶ ହେଲା ୧୯୧୨ ଏପ୍ରିଲ ଏକ ତାରିଖରେ ଏବଂ ଏହାର ପ୍ରଥମ ରାଜ୍ୟପାଳ ଥିଲେ ସ୍ୟର୍‌ ଷ୍ଟୁଆର୍ଟ ବାଇଲି । ଓଡ଼ିଶା ବାଧ୍ୟତାମୂଳକ ଏପ୍ରିଲ ୧ ତାରିଖ ୧୯୩୬ ସାଲ ପର୍ଯ୍ୟନ୍ତ ବିହାର ସହିତ ରହିବା ପରେ ଏକ ସ୍ୱତନ୍ତ୍ର ପ୍ରଦେଶରୂପେ ଗଢ଼ିଉଠିଲା ।

## କୃଷ୍ଣଚନ୍ଦ୍ର ଗଜପତିଙ୍କ ବାଲ୍ୟ ଜୀବନ ଏବଂ ଶିକ୍ଷା

ସ୍ୱନାମଧନ୍ୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ବୈଶାଖ ମାସ ଅମାବାସ୍ୟା ତିଥିରେ ଏକ ଶୁଭ ମୁହୂର୍ତ୍ତରେ ପ୍ରସିଦ୍ଧ ପାରଳାଖେମୁଣ୍ଡି ନଗର ଗଜ ବଂଶରେ ଜନ୍ମଗ୍ରହଣ କରିଥିଲେ । ସେ ଦିନ ଥିଲା ୧୮୯୨ ମସିହା ଏପ୍ରିଲ ୨୬ ତାରିଖ । ସେହି ଦିନ ରାଜନଗରୀ ଏବଂ ପ୍ରଜାମାନଙ୍କ ମଧ୍ୟରେ ଏକ ଆନନ୍ଦ ଉଲ୍ଲାସର ଲହରୀ ଖେଳି ଯାଇଥିଲା ।

ତାଙ୍କର ପିତା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଏବଂ ମାତା ବିଷ୍ଣୁପ୍ରିୟା ଦେବୀଙ୍କ ତତ୍ତ୍ୱାବଧାନରେ ଘରେ ରହି ବାଲ୍ୟଶିକ୍ଷା ସମାପ୍ତ ହୋଇଥିଲା । କାରଣ କୃଷ୍ଣଚନ୍ଦ୍ର ଗଜପତିଙ୍କ ପିତା, ମାତା ଜାଣିଥିଲେ ଯେ ଦେଶର ଭବିଷ୍ୟତ ପାଇଁ କେଉଁଟା ଭଲ ଏବଂ କେଉଁଟା ମୂଲ୍ୟବାନ । ତାଙ୍କର ବାଲ୍ୟଶିକ୍ଷା ସମୟରେ 'ଅପନ୍ନା' ଥିଲେ ବ୍ୟକ୍ତିଗତ ଶିକ୍ଷକ ଯିଏକି 'କବିଜୀବନୀ' 'ଛନ୍ଦ ସଂଗ୍ରହ' ଏବଂ 'ପଦ୍ମନାଭ' ଜୀବନୀ ନାମକ କେତୋଟି ପ୍ରସିଦ୍ଧ ଓଡ଼ିଆ ବହି ଲେଖିଥିଲେ । ଗଞ୍ଜାମ ଜିଲ୍ଲାର ପ୍ରଥମ ଗ୍ରାଜୁଏଟ ଶ୍ୟାମସୁନ୍ଦର ରାଜଗୁରୁ ମଧ୍ୟ କୃଷ୍ଣଚନ୍ଦ୍ର ଗଜପତିଙ୍କର ଶିକ୍ଷକ ଥିଲେ । ତାଙ୍କ ବାପାଙ୍କ ଅବସରପ୍ରାପ୍ତ ସେକ୍ରେଟାରୀ ଏବଂ ମ୍ୟାନେଜର ଶ୍ରୀଯୁକ୍ତ ଟେଲରଙ୍କ ତତ୍ତ୍ୱାବଧାନରେ ସେ ଶିକ୍ଷାଲାଭ କରୁଥିଲେ । ଏହି ଭାବରେ କୃଷ୍ଣଚନ୍ଦ୍ର ଗଜପତିଙ୍କର ବାଲ୍ୟଶିକ୍ଷା ସମାପ୍ତ ହୋଇଥିଲା ।

ଅତି ଅଳ୍ପ ବୟସରେ ଅର୍ଥାତ୍ ଯେତେବେଳେ ତାଙ୍କୁ ମାତ୍ର ୮ ବର୍ଷ ହୋଇଥିଲା ସେତେବେଳେ ତାଙ୍କ ପିତା ଗୌରଚରଣ ଗଜପତି ନାରାୟଣ ଦେବଙ୍କ ସ୍ୱର୍ଗବାସ ହୋଇଥିଲା । ତାପରେ କୃଷ୍ଣଚନ୍ଦ୍ର ଗଜପତି ପାରଳାଖେମୁଣ୍ଡି ମହାରାଜାଙ୍କ ହାଇସ୍କୁଲରେ ଅଧ୍ୟୟନ କଲେ । ସେଠାରେ ହାଇସ୍କୁଲ ଶିକ୍ଷା ସମାପ୍ତ କରି ଉଚ୍ଚଶିକ୍ଷାପାଇଁ ମାନ୍ଦ୍ରାଜ ଯାଇ କୋର୍ଟ ଅଫ ଓ୍ୱାର୍ଡ଼ସ ଇନଷ୍ଟିଚ୍ୟୁଟରେ ନାମ ଲେଖାଇଲେ । ସେଠାରେ ଅଧ୍ୟୟନ କରି ସେ ନିଜକୁ ଅନ୍ତର୍ଜାତୀୟ ସମ୍ପ୍ରଦାୟ, ସ୍ୱଦେଶ ଭକ୍ତ ଏବଂ ପୃଷ୍ଠପୋଷକରୂପରେ ଗଢ଼ି ତୋଳିଲେ । ତା ଛଡ଼ା ସେ ଛାତ୍ର ଜୀବନରେ ତାଙ୍କର ପ୍ରଜାବତ୍ସଳତା ରାଜନୀତିର ରାଜ୍ୟପାଇଁ ଗ୍ରାମାଞ୍ଚଳର ଉନ୍ନତି, କୃଷି କ୍ଷେତ୍ରରେ ଉନ୍ନତି କରିବାପାଇଁ ଏକ କାର୍ଯ୍ୟସୂଚୀ ପ୍ରସ୍ତୁତ କରିଥିଲେ ।

ଜମିଦାରମାନଙ୍କ ମଧ୍ୟରେ କୃଷ୍ଣଚନ୍ଦ୍ର ଗଜପତି ଥିଲେ ଜଣେ ମାତ୍ର ଜମିଦାର ଯିଏକି ଶିକ୍ଷାର ପ୍ରସାର ପାଇଁ ପ୍ରାଧାନ୍ୟ ଦେଉଥିଲେ । ତାଙ୍କର ପୂର୍ବପୁରୁଷମାନଙ୍କଦ୍ୱାରା ପ୍ରତିଷ୍ଠିତ ସ୍କୁଲମାନଙ୍କରେ ସଂସ୍କୃତ ଏବଂ ଇଂରେଜୀକୁ ଉଚ୍ଚଶିକ୍ଷାରେ ପରିଣତ କରିବାପାଇଁ ଲାଗିପଡ଼ିଥିଲେ ।

କୃଷ୍ଣଚନ୍ଦ୍ର ଗଜପତି ତାଙ୍କ ପିତା ଗୌରଚନ୍ଦ୍ର ଗଜପତି ଏବଂ ଦାଦା ପଦ୍ମନାଭ ନାରାୟଣ ଦେବଙ୍କ ପରି ଓଡ଼ିଆପ୍ରେମୀ ଥିଲେ । ତାଙ୍କର ପିତା ରଖିଯାଇଥିବା ପ୍ରଚୁର ଟଙ୍କାକୁ ସେ ଅଯଥା ବ୍ୟୟ କରିବା ପାଇଁ ପ୍ରଶ୍ରୟ ଦେଉ ନଥିଲେ । ସେ ବାଲ୍ୟାବସ୍ଥାରୁ ମାନବ ସମାଜର ହିତୈଷୀ ଥିଲେ । ପ୍ରଜାମାନଙ୍କର ସେବାରେ ରାଜକୋଷରୁ ପ୍ରଚୁର ଟଙ୍କା ବ୍ୟୟ କରୁଥିଲେ ।

## ରାଜନୈତିକ ଜୀବନ ଆରମ୍ଭ

ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଜଣେ ସାଧାରଣ ମନୁଷ୍ୟ ନଥିଲେ । ସେ କେବଳ ପାରଳା ମହାରାଜା ଭାବରେ ପରିଚିତ ନଥିଲେ । ସେ ଥିଲେ ନୂତନ ଓଡ଼ିଶା ପ୍ରଦେଶ ଗଠନର ଅନ୍ୟତମ

ନିର୍ମାତା, ଓଡ଼ିଆ ଜାତିର ସଂଗଠକ ତଥା ଓଡ଼ିଆ ଜାତିର ପିତା ଏବଂ ଇତିହାସ ପ୍ରସିଦ୍ଧ ଗଜପତି ବଂଶୀୟ ପାରଳା ମହାରାଜା ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ।

ଯେତେବେଳେ ତାଙ୍କ ବାପାଙ୍କ ମୃତ୍ୟୁ ଘଟିଲା ସେତେବେଳେ ସେ ବାଧ୍ୟ ହୋଇଥିଲେ କଲେଜ ଶିକ୍ଷା ବନ୍ଦକରି ପାରଳାଖେମୁଣ୍ଡି ଫେରି ଆସିବାକୁ ଏବଂ ୧୯୧୩ ସାଲରେ ସେ ସିଂହାସନ ଆରୋହଣ କରିଥିଲେ । ସେହି ବର୍ଷ କୃଷ୍ଣଚନ୍ଦ୍ର ଗଜପତି ଖରସୁଆଁ ରାଜାଙ୍କ କନ୍ୟାସହ ବିବାହ କରିଥିଲେ ।

କୃଷ୍ଣଚନ୍ଦ୍ର ଗଜପତି ରାଜଗାଦିରେ ବସିବା ପରେ କେତେଗୁଡ଼ିଏ ଶପଥ ନେଇଥିଲେ । ସେଗୁଡ଼ିକ ହେଲା :—

(୧) ପିତାଙ୍କର ସଂରକ୍ଷଣ ରାଜକୋଷରେ ଥିବା ୨୫ ଲକ୍ଷ ଟଙ୍କାକୁ ନିଜର ଭୋଗ ବିଳାସରେ ସେ ବ୍ୟୟ କରିବେ ନାହିଁ ।

(୨) ତାଙ୍କର ପୂର୍ବପୁରୁଷମାନେ କରିଯାଇଥିବା କୀର୍ତ୍ତିମାନଙ୍କୁ ପରିବର୍ଦ୍ଧିତ କରିବେ ।

(୩) ଲୋକହିତକର ଅନୁଷ୍ଠାନମାନ ଗଠନ କରି ପ୍ରଜାମଙ୍ଗଳ ପାଇଁ ସତତ ନିଯୁକ୍ତ ରହିବେ ।

(୪) ପଦବ୍ରଜରେ ଯାଇ ବ୍ରହ୍ମକପାଳରେ ପିତା, ପିତାମହଙ୍କୁ ପିଣ୍ଡ ଦାନ କରିବେ ।

(୫) ସ୍ୱହସ୍ତରେ ଜଙ୍ଗଲ ଭିତରେ ପଶୁ ଶୀକାର କରିବେ ।

ପରେ ପରେ ରାଜବଂଶର ପରମ୍ପରା ଓ ଆଦର୍ଶକୁ ଅତି ନିଷ୍ଠାର ସହିତ ପାଳନ କରି ଆତ୍ମମର୍ଯ୍ୟାଦା ଓ ସମ୍ମତିକୁ ସୁପ୍ରତିଷ୍ଠିତ କରିପାରିଥିବାରୁ ତତ୍କାଳୀନ ବ୍ରିଟିଶ୍ ସରକାର କୃଷ୍ଣଚନ୍ଦ୍ର ଗଜପତିଙ୍କୁ "ମହାରାଜା" ଉପାଧିରେ ଭୂଷିତ କରିଥିଲେ ।

ସେତେବେଳେ ଜନ୍ମଭୂମି ଓଡ଼ିଶା ଶିକ୍ଷା, ଦୀକ୍ଷା, ରାଜନୈତିକ ଚେତନା ଓ ସାମାଜିକ ଜାଗରଣ ଆଦି କ୍ଷେତ୍ରରେ ବହୁତ ପଛରେ ପଡ଼ିଥିଲା । ଅବଶ୍ୟ ସମ୍ପୂର୍ଣ୍ଣ ରାଜନୈତିକ ଦୃଷ୍ଟିକୋଣରୁ ନହେଲେ ମଧ୍ୟ ଓଡ଼ିଆ ଭାଷାର ଉନ୍ନତି, ସାହିତ୍ୟର ସମ୍ପ୍ରସାରଣ ତଥା ସଂସ୍କୃତିର ସଂରକ୍ଷଣ ଏବଂ ଭିନ୍ନ ପ୍ରଦେଶରେ ବିଚ୍ଛିନ୍ନ ରୂପେ ଶାସିତ ହେଉଥିବା ଓଡ଼ିଆମାନଙ୍କୁ ଏକତ୍ରିତ କରିବାର ଅଭିଳାଷ କୃଷ୍ଣଚନ୍ଦ୍ର ଗଜପତିଙ୍କ ମନରେ ଗଭୀର ରେଖାପାତ କରିଥିଲା । ତାଙ୍କର ଛାତ୍ର ଜୀବନରୁ ହିଁ ସେ ମାତୃଭୂମି ପ୍ରତି ଗଭୀର ଶ୍ରଦ୍ଧା ଓ ଭକ୍ତି ଦେଖାଇବା ସଙ୍ଗେ ସଙ୍ଗେ ନିରଳସ କର୍ମତତ୍ପରତାର ଯେଉଁ ପରିଚୟ ଦେଇ ଯାଇଛନ୍ତି, ତାହା ଓଡ଼ିଶା ଇତିହାସରେ ଲିପିବଦ୍ଧ ହୋଇ ରହିବ ।

ଶିକ୍ଷା ଏବଂ କୃଷିର ପ୍ରସାର ପାଇଁ ବିଭିନ୍ନ ଅନୁଷ୍ଠାନକୁ ତାଙ୍କର ଦାନ ଥିଲା ଅତୁଳନୀୟ । ସାକ୍ଷୀଗୋପାଳରେ ଥିବା ସତ୍ୟବାଦୀ ସ୍କୁଲକୁ ସୁପରିଚାଳିତ କରିବା ପାଇଁ ସେ ୫୦୦ ଟଙ୍କା ଦାନ କରିଥିଲେ । ପଣ୍ଡିତ ଗୋପବନ୍ଧୁ କୃଷ୍ଣଚନ୍ଦ୍ର ଗଜପତିଙ୍କର ଦାନ ପାଇଁ କୃତଜ୍ଞତାଜ୍ଞାପନ କରିଥିଲେ । କୃଷି ଶିଳ୍ପର ଗଭୀର ଗବେଷଣା ଓ ଅନୁଧ୍ୟାନ ପାଇଁ ମହାରାଜା କୁନୁର ଗବେଷଣା କେନ୍ଦ୍ରକୁ ଏକଲକ୍ଷ ଟଙ୍କା ଏବଂ କଟେଇ ରାମକୃଷ୍ଣ କୁଟୀର ନିର୍ମାଣ ପାଇଁ ଦଶହଜାର ଟଙ୍କା ଦାନ କରିଥିଲେ । ସ୍ୱର୍ଗୀୟ ମହାରାଜା ରାଜକୀୟ ଖଜଣା ଆଦାୟର ବହୁଳାଂଶ ଓଡ଼ିଆ ସାହିତ୍ୟ ସଂସ୍କୃତି ଓ ଜାତି ଗଠନରେ ଉଦାର ଭାବେ ବିନିଯୋଗ କରି ଚରମ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

ଏହାପରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ସାହାଯ୍ୟ ଲଭିକରି ଓଡ଼ିଶାର ଅନେକ ଶିକ୍ଷାନୁଷ୍ଠାନ ଏବଂ ଧର୍ମ ଅନୁଷ୍ଠାନ ଗଢ଼ି ଉଠିଛି । କେତେକ ଜଣାଶୁଣା ବ୍ୟକ୍ତି ମଧ୍ୟ ଜୀବନ କ୍ଷେତ୍ରରେ ସୁପ୍ରତିଷ୍ଠିତ ହୋଇପାରିଛନ୍ତି । ନିଜ ରାଜ୍ୟପାଳନର ଦାୟିତ୍ୱ ବହନ କରିବା ପରଠାରୁ ନିଜ ରାଜ୍ୟର ଶିକ୍ଷାଗତ ଉନ୍ନତି ପାଇଁ ଯଥେଷ୍ଟ ଆନ୍ତରିକତା ଓ ନିଷ୍ଠାର ସହ ଆଗେଇଛନ୍ତି ।

ପାରଳା ଖେମୁଣ୍ଡିରେ ଏକ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ୧୮୫୭ ସାଲରେ ଏବଂ ୧୮୮୪ ସାଲରେ ତାହା ଏକ ପୂର୍ଣ୍ଣାଙ୍ଗ ବିଦ୍ୟାଳୟରେ ପରିଣତ ହେଲା । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ତାକୁ ଏକ ଦ୍ୱିତୀୟ ଶ୍ରେଣୀ ମହାବିଦ୍ୟାଳୟରେ ପରିଣତ କରି ପାରିଥିଲେ ୧୮୯୬ ସାଲରେ ଯେତେବେଳେ ଏହି ମହାବିଦ୍ୟାଳୟ ମାନ୍ଦ୍ରାଜ ସହ ମିଶି ରହିଲା । ପରେ ପରେ ମହାରାଜାଙ୍କ ଉଦ୍ୟମ ଫଳରେ ଏହି ମହାବିଦ୍ୟାଳୟ ଏକ ପ୍ରଥମ ଶ୍ରେଣୀ ମହାବିଦ୍ୟାଳୟ ରୂପରେ ପରିଣତ ହେଲା । ୧୯୩୬ ସାଲରେ ନୂତନ ଓଡ଼ିଶା ପ୍ରଦେଶ ଗଠନ ଅବସରରେ ଏହି କଲେଜକୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଲେଜ ନାମରେ ନାମିତ କରାଗଲା ଏବଂ ଏହାକୁ ୧୯୬୭ ସାଲ ପର୍ଯ୍ୟନ୍ତ ମହାରାଜା ନିଜେ ପରିଚାଳିତ କରୁଥିଲେ । ଏହି କଲେଜକୁ ୧୯୬୭ ସାଲ ନଭେମ୍ବର ମାସ ୭.ତାରିଖ ଦିନ ସରକାରଠାରେ ନ୍ୟସ୍ତ ହେଲା । ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ ହେଲା ସେତେବେଳେ ଏହି ମହାବିଦ୍ୟାଳୟକୁ ମାନ୍ଦ୍ରାଜରୁ ଅଲଗା କରି ଉତ୍କଳ ବିଶ୍ୱବିଦ୍ୟାଳୟରେ ମିଶାଇ ଦିଆଗଲା । ଏହି କଲେଜର ପ୍ରତିଷ୍ଠା ପାଇଁ ମହାରାଜାଙ୍କ ଉଦ୍ୟମ ଉଲ୍ଲେଖନୀୟ ।

କୃଷ୍ଣଚନ୍ଦ୍ର ଗଜପତି ଅତ୍ୟନ୍ତ ପ୍ରଜାବତ୍ସଳ ଥିଲେ । ପ୍ରଜାମାନଙ୍କ ସୁଖ ଦୁଃଖରେ ଭାଗନେଇ ରାଜ୍ୟରେ କୃଷି, ଜଳସେଚନ, ସ୍ୱାସ୍ଥ୍ୟ ଶିଳ୍ପ ଗମନାଗମନ ଏବଂ ଚିକିତ୍ସାର ସମ୍ପ୍ରସାରଣ ବ୍ୟବସ୍ଥାମାନ କରିବାରେ ଅଗ୍ରାଧିକାର ଦେଇଥିଲେ । ସେ ଧର୍ମ କାର୍ଯ୍ୟରେ ମଧ୍ୟ ସାହାଯ୍ୟ ଓ ସହାନୁଭୂତି ପ୍ରଦର୍ଶନ କରୁଥିଲେ ।

ତାଙ୍କର ରାଜତ୍ୱକାଳରେ ସ୍ୱଦେଶପ୍ରୀତିର ଯଥେଷ୍ଟ ଉଦାହରଣମାନ ଆମେ ଦେଖିବାକୁ ପାଉ । ଏତେଗୁଡ଼ିଏ ସୁନାମର ଅଧିକାରୀ ହୋଇପାରିବା ଖୁବ୍ କମ୍ ବ୍ୟକ୍ତିମାନଙ୍କ ପକ୍ଷରେ ସମ୍ଭବ ଅଟେ ।

କୃଷ୍ଣଚନ୍ଦ୍ର ଗଜପତି ବାଲ୍ୟାବସ୍ଥାରୁ ଭଲଭାବରେ ବୁଝିଥିଲେ ଯେ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ମୂଲ୍ୟବାନ । ମନୁଷ୍ୟ କେତେଦିନ ଅବା ଦୁନିଆରେ ବଞ୍ଚିରହିବ କେହି କହିପାରିବ ନାହିଁ । ଏଣୁ କୃଷ୍ଣଚନ୍ଦ୍ର ଗଜପତି ଜୀବନର

ପ୍ରତ୍ୟେକ ମୁହୂର୍ତ୍ତିକୁ ଅଯଥାରେ ନ କଟାଇ ଦେଶ ତଥା ଜାତିର କଲ୍ୟାଣ ସାଧନ ପାଇଁ ସର୍ବଦା ଚେଷ୍ଟିତ ଥିଲେ ।

ଯିଏ ଅନ୍ଧକାରରେ ପଥଚଣା ହୁଏ ତାକୁ ଭୟ ଲାଗେ । ଅନିଶ୍ଚିତତା ଓ ଆଶଙ୍କାର ମିଶ୍ରଣରେ ଭୟ ଜାତ ହୁଏ । ଯେଉଁଠି ସୁନିଶ୍ଚିତତା ଓ ସ୍ପଷ୍ଟତା ରହିଛି ସେଠି ଭୟର କୌଣସି କାରଣ ନାହିଁ । ଭୟ ହେତୁ ମନୁଷ୍ୟ ଉଦ୍‌ବିଗ୍ନ ହୁଏ । ବେଳେବେଳେ ସେ ଭାବେ ଯେ, ଅମୁକ ବ୍ୟକ୍ତି ଅମୁକ ପରିସ୍ଥିତିରେ ମୋର ଅମୁକ କ୍ଷତି ସାଧନ କରିବ । ମନରେ ଏଭଳି ଆଶଙ୍କା ଜାତ ହବା ଦ୍ୱାରା ଏକ ଭୟଙ୍କର ସଙ୍କଟ ସମ୍ମୁଖକୁ ଆସେ । କିନ୍ତୁ ସେହିପରି କ୍ଷେତ୍ରରେ କୃଷ୍ଣଚନ୍ଦ୍ର ଗଜପତି କୌଣସି କାର୍ଯ୍ୟ କରିବା ପୂର୍ବରୁ ମନରେ କୌଣସି ଆଶଙ୍କା ରଖୁ ନଥିଲେ । ସେ ତାଙ୍କର କର୍ମପନ୍ଥାରେ ଆଗେଇ ଯାଆନ୍ତି ଏକ ଦୃଢ଼ ବିଶ୍ୱାସ ନେଇ, ଯାହାକି ଶେଷରେ ଅନିଶ୍ଚିତତା ଏବଂ ଆଶଙ୍କା ତାଙ୍କ ପାଖରେ ପରାଜୟ ସ୍ୱୀକାର କରେ ଓ ତାହା ସୁନିଶ୍ଚିତତା ଏବଂ ସ୍ପଷ୍ଟତାରେ ପରିଣତ ହୁଏ ଏବଂ ସେ ବିଜୟ ଲାଭ କରନ୍ତି । ତାଙ୍କର କଳ୍ପନା ଅତି ଅଦ୍ଭୁତ ଏବଂ ତାଙ୍କର କାର୍ଯ୍ୟକଳାପ ଅତି ଚମତ୍କାର ।

ବାଧାମାନଙ୍କ ମଧ୍ୟରେ ମନର ବାଧା ହେଉଛି ସବୁଠାରୁ ବଡ଼ ବାଧା । ସେହିପରି ମନ, ବାସନା, ତୃଷ୍ଣା, ଇତ୍ୟାଦିରେ ଲୋଭ ନଥିଲେ କୌଣସି କାମରେ ରୁଚି ରହେନାହିଁ । ପରୋକ୍ଷ ଭାବରେ ବିବେକଶୀଳ ସୁସଂସ୍କୃତ ମନ କେବଳ ଲାଗିରହେ । ନେଣୁ ଦୂରଦର୍ଶୀ ସନ୍ତପରିଣାମକୁ ବିଚାର କରି, ଆଜିକାର ସମସ୍ୟା ସହିତ ସଂଘର୍ଷ ପାଇଁ ବିବେକଶୀଳ ଦୃଢ଼ତା ଏବଂ ସାହାସିକତାର ପରିଚୟ ଦେଇଥିଲେ କୃଷ୍ଣଚନ୍ଦ୍ର ଗଜପତି ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଓ ଓଡ଼ିଆ ଜାତିର ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ସେ ମନରେ ଅନେକ ଆଶା ଓ ଆକାଙ୍କ୍ଷା ପୋଷଣ କରିଥିଲେ ଏବଂ ଚିନ୍ତାର ଧାର ପରିବର୍ତ୍ତନ କରି ସେ ତାକୁ ଉତ୍ତମ ମାର୍ଗରେ ପରିଚାଳିତ କରିଥିଲେ । ଗଠନମୂଳକ ଚିନ୍ତାର ଅଭ୍ୟାସ କରାଯାଏ ଏବଂ ତାକୁ ସନ୍ମାର୍ଗରେ କାଢ଼ି ନିଆଯାଏ ତେବେ ଦେବଗଣ ମଧ୍ୟ ବରଦାନ ଦବା-

ପାଇଁ ସ୍ୱର୍ଗରୁ ଓହ୍ଲାଇ ଆସି ପ୍ରତିଷ୍ଠିତ ହୁଅନ୍ତି । ଆଜି ସେଇଠି ଇଂରେଜ ସରକାର ବା କେଉଁଠି । ଉତ୍କଳ ଭବିଷ୍ୟତ ପାଇଁ ସେ ଆଶା ଓ ଆକାଙ୍କ୍ଷା ପୋଷଣକରି ଅନେକ ଯୁକ୍ତି ବାଢ଼ିଥିଲେ ଗୋରା ସରକାର ଆଗରେ ଏବଂ ଭବିଷ୍ୟତ କାର୍ଯ୍ୟକ୍ରମର ଏକ ସ୍ୱପ୍ନେଇ ଚିତ୍ର କଳ୍ପନା କରିଥିଲେ, ଯାହାକି ଭବିଷ୍ୟତରେ ମୂର୍ତ୍ତିମାନ ହୋଇପାରିବ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଥିଲେ ଜଣେ ଦେଶ ସେବକ ଏବଂ ଦକ୍ଷ ଶାସକ । ସେ ଯେଉଁ ଅନୁଷ୍ଠାନମାନଙ୍କୁ ସୁପରିଚାଳିତ କରିବା ପାଇଁ ଅତୀତରେ ଦାନ କରୁଥିଲେ, ତାହା ପାରଳାଖେମୁଣ୍ଡି ଭିତରେ ଥାଉ କିମ୍ବା ବାହାରେ ଥାଉ, ସମସ୍ତଙ୍କପାଇଁ ତାଙ୍କର ଦାନ ଥିଲା ଅତୁଳନୀୟ । ସେ କହୁଥିଲେ ଏହି ଅନୁଷ୍ଠାନଗୁଡ଼ିକ ଯଦି ବଞ୍ଚିରହେ ତାହାହେଲେ ଆମ ଦେଶର ଭବିଷ୍ୟତ ଉଜ୍ଜ୍ୱଳ ହେବ ।

ସେ ପାରଳାଖେମୁଣ୍ଡିରେ ୩୦ ହଜାର ଟଙ୍କା ବ୍ୟୟରେ ଏକ ବାଳିକା ବିଦ୍ୟାଳୟ ନିର୍ମାଣ କରିଥିଲେ । ସେହି ବାଳିକା ବିଦ୍ୟାଳୟର ମୂଲ୍ୟ ବର୍ତ୍ତମାନ ୫ ଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ହେବ । ସଂସ୍କୃତ କଲେଜ ଏବଂ ବୈଷୟିକ ଶିକ୍ଷାର ପ୍ରସାର ପାଇଁ ଏକ ଶିଳ୍ପ ଅନୁଷ୍ଠାନ ମଧ୍ୟ ସ୍ଥାପନ କରିଥିଲେ । ଏହିସବୁ ଅନୁଷ୍ଠାନଗୁଡ଼ିକୁ ନିଜର ଖର୍ଚ୍ଚରେ ପରିଚାଳନା କରୁଥିଲେ । ଶହ ଶହ ଛାତ୍ର ଛାତ୍ରୀ ଓଡ଼ିଶା ଏବଂ ଓଡ଼ିଶା ବାହାରୁ ଆସି ଅଧ୍ୟୟନ କରିପାରୁଥିଲେ । ସେଠାରେ ପଢୁଥିବା, ତେଲୁଗୁ ଓଡ଼ିଆ ଉଭୟ ସମ୍ପ୍ରଦାୟର କୃତି ଛାତ୍ର ଛାତ୍ରୀମାନଙ୍କୁ ବୃତ୍ତିଦାନରେ ପାତର ଅନ୍ତର ନଥିଲା । ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ପାଇଁ ବହୁ ଲେଖକଙ୍କୁ ସେ ଆର୍ଥିକ ସାହାଯ୍ୟ ଦେଇ ଉତ୍ସାହିତ କରୁଥିଲେ । ପ୍ରାୟ ପ୍ରତ୍ୟେକ ଭାଷାରେ ତାଙ୍କର ଯଥେଷ୍ଟ ଜ୍ଞାନ ଥିଲା ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଚୂଡ଼ାନ୍ତ ପର୍ଯ୍ୟାୟର ଜଣେକ ଐତିହାସିକ ଜନନାୟକ ହେଉଛନ୍ତି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ୧୯୧୬ ସାଲରେ ଅଷ୍ଟମ ଉତ୍କଳ ସମ୍ମିଳନୀରେ ଏକ ପ୍ରସ୍ତାବ ଗୃହୀତ

ହୋଇଥିଲା ଯେ, ସଂଗ୍ରାମ ହେବ ଦେଶ ମିଶ୍ରଣ ଆନ୍ଦୋଳନର ଏକ କେନ୍ଦ୍ରସ୍ଥଳ ।

ମନୁଷ୍ୟର ଉଚ୍ଚ ଆକାଂକ୍ଷା ଅନେକ ସମୟରେ ପୂର୍ଣ୍ଣମାତ୍ରାରେ ଫଳପ୍ରଦ ହେବାର ଦେଖାଯାଏ ଏବଂ ବ୍ୟକ୍ତି ବିଶେଷକୁ ଉଚ୍ଚ ଆସନ ଦେଇଥାଏ ।

ଉତ୍କଳ ଗୌରବ ମଧୁସୂଦନ, ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଜାତି ପ୍ରେମ ଓ ଓଡ଼ିଶାପ୍ରଦେଶ ଗଠନ ପାଇଁ ଅକ୍ଲାନ୍ତ ଉଦ୍ୟମକୁ ଭୂୟସୀ ପ୍ରଶଂସା କରିଥିଲେ । ତାଙ୍କର ଦୃଢ଼ ଆଶା ଏବଂ ବିଶ୍ୱାସ ଥିଲା ଯେ, ଦିନ ଆସିବ କୃଷ୍ଣଚନ୍ଦ୍ର ଗଜପତିଙ୍କ ବଳିଷ୍ଠ ନେତୃତ୍ୱରେ ଓଡ଼ିଆ ଜାତି ପାଇବ ତାର ଅମୂଲ୍ୟ ସମ୍ପଦ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପରେ ।

ଓଡ଼ିଆଭାଷା ଏକ ସ୍ୱତନ୍ତ୍ରଭାଷା । ଏହିଭାଷାକୁ ଦେଶ ବିଦେଶରେ ସମ୍ମାନିତ କରିବା ପାଇଁ ବ୍ୟାସକବି ଫକୀରମୋହନ (୧୮-୫-୧୮୮୮) ମସିହାରେ "ବାଲେଶ୍ୱର ସମ୍ବାଦ ବାହିକା" ନାମରେ ଏକ ପତ୍ରିକା ପ୍ରକାଶ କଲେ । ଏହି ପତ୍ରିକା ବାହାରିବା ଫଳରେ ଓଡ଼ିଆଭାଷା ଦେଶ ବିଦେଶରେ ସମାଦୃତ ହୋଇଥିଲା ।

କୃଷ୍ଣଚନ୍ଦ୍ର ଗଜପତି ଯେତେବେଳେ ଶୁଣିଲେ ଯେ କେତେକ ବଙ୍ଗବାସୀ ସେହି ମହାନ ଓଡ଼ିଆ ଭାଷାକୁ ଓଡ଼ିଶାରୁ ବିଲୋପ କରିବା ପାଇଁ ଯଥେଷ୍ଟ ଉଦ୍ୟମ କରୁଛନ୍ତି, ସେ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଏବଂ ଭବିଷ୍ୟତରେ ଏହାର ପ୍ରସାର ପାଇଁ ସେ ଅବିରତ ପରିଶ୍ରମ କରି ଗାଁ ଗହଳରେ ବୁଲି ବୁଲି ସଭାସମିତିମାନ କରି ଲୋକମାନଙ୍କୁ ବୁଝାଇଥିଲେ ।

ଭାଙ୍ଗିବା ସହଜ; କିନ୍ତୁ ଗଢ଼ିବା କଷ୍ଟ । ଏହା ସୃଷ୍ଟିର ବିଚିତ୍ରତା ମଧ୍ୟରେ ଏକ ଅଦ୍ଭୁତ ବିଡ଼ମ୍ବନା ଅଟେ । ଅନେକ ବ୍ୟକ୍ତି ଏକାଠି ହୋଇ ଦଳ ଗଢ଼ନ୍ତି, ଷଡ଼ଯନ୍ତ୍ର କରନ୍ତି ଓ ବଡ଼ ବଡ଼ ପ୍ରତିଦ୍ୱନ୍ଦିତାରେ ଭାଗ ନେଇ କାର୍ଯ୍ୟ ହାସଲ କରିବାରେ ସକ୍ଷମ ହୁଅନ୍ତି । କିନ୍ତୁ ସତ୍ ପ୍ରବୃତ୍ତି ଆଚରଣକରି

ସେମାନେ ଏକାକୀ ସେମାନଙ୍କର କାମ କରନ୍ତି । ସେମାନେ ଦଳବଳଙ୍କୁ ଅପେକ୍ଷା କରନ୍ତି ନାହିଁ । ସଂଖ୍ୟା ବଳ ତୁଳନାରେ ସବୁବେଳେ ମନବଳ ଆତ୍ମବଳର ପକ୍ଷ ହିଁ ଭାରି ରହେ ।

ଶତ ଶତ ବର୍ଷ ଧରି ପାରଳା ଗଜପତିବଂଶ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସବୁ କ୍ଷେତ୍ରରେ ଶିକ୍ଷା, ସଭ୍ୟତା ଓ ସଂସ୍କୃତିର ସେଉଁ ବର୍ତ୍ତି ଜଳାଇ ଆସିଥିଲେ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ତାଙ୍କର ଜୀବନକାଳ ମଧ୍ୟରେ ସେହି ଆଲୋକ ଶିଖାକୁ ଅବ୍ୟାହତ ରଖି ଅପେକ୍ଷାକୃତ ଉଜ୍ଜ୍ୱଳତର କରି ଜଳାଇଥିଲେ ।

୧୯୧୩ ସାଲରେ ଗୋପବନ୍ଧୁ ଦାସ, ନୀଳମଣି ବିଦ୍ୟାରତ୍ନ, ନରସିଂହ ଦାସ, ଶ୍ରୀବତ୍ସ ପଣ୍ଡା, ପଣ୍ଡିତ ଗୋଦାବରୀଶ, ନୀଳକଣ୍ଠ ଦାସ ଏବଂ ଅନ୍ୟମାନେ ସଂଗଠିତ ହୋଇ "ଆଶା" ନାମରେ ଏକ ସାପ୍ତାହିକ ଓଡ଼ିଆ ପତ୍ରିକା ଆରମ୍ଭ କଲେ । ଏହି ପତ୍ରିକାର ସମ୍ପାଦକ ଥିଲେ ଶଶୀଭୂଷଣ ରଥ । ଏହା ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ଠାରୁ ପ୍ରକାଶ କରାଗଲା ।

ଉତ୍କଳ ପତ୍ରିକା "ଆଶା" ସଙ୍ଗେ ସାଙ୍ଗେ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ପ୍ରେରିତ କରାଗଲା । ସମ୍ବାଦପତ୍ର ଗୋଟିଏ ଜିନିଷ ଯାହାଦ୍ୱାରା କି ପ୍ରତ୍ୟେକ ଖବର ଠିକ୍‌ଣା ଭାବରେ ପ୍ରତ୍ୟେକ ଲୋକଙ୍କ ପାଖରେ ପହଞ୍ଚାଇ ଦିଆଯାଇ ପାରିବ, ତାଛଡ଼ା ଜନମତ ସୃଷ୍ଟି ମଧ୍ୟ କରାଯାଇପାରିବ । କୃଷ୍ଣଚନ୍ଦ୍ର ଗଜପତିଙ୍କର ବିଶ୍ୱାସ ଥିଲାଯେ, ସମ୍ବାଦପତ୍ର ଦ୍ୱାରା ହିଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବାସ କରୁଥିବା ଓଡ଼ିଆଭାଷୀ ଜନତା ରାଜନୈତିକ ଚେତନାରେ ଅଭିଭୂତ ହୋଇ ପାରିବେ ଏବଂ ତାଙ୍କର ଉପଯୁକ୍ତ ଦାବୀ ସରକାରଙ୍କ ପାଖରେ ସଂଗଠିତ ଆକାରରେ ଉପସ୍ଥାପିତ କରିପାରିବେ । ସମ୍ବାଦପତ୍ର "ଆଶା" ଦ୍ୱାରା ହିଁ ଲୋକମାନଙ୍କୁ ସଂଗଠିତ କରି ଆନ୍ଦୋଳନ କରିବା ସମ୍ଭବପର ହୋଇପାରିଲା । ବିଭିନ୍ନ ସ୍ଥାନ ବୁଲି ବୁଲି ଜନମତ ସୃଷ୍ଟି କରିବାର ଅସୁବିଧାର ଅବସାନ ଘଟିଲା ।

୧୯୧୪ ସାଲରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା । ସେହିବର୍ଷ ଓଡ଼ିଆ ବିଚ୍ଛିନ୍ନାଞ୍ଚଳମାନଙ୍କୁ ଏକାଠି କରିବା ପାଇଁ ଆନ୍ଦୋଳନର

ଏକ ନୂତନ ଅଧ୍ୟାୟ ସୃଷ୍ଟି ହୋଇଥିଲା । କୃଷ୍ଣଚନ୍ଦ୍ର ଗଜପତି ସେହି ସମୟଠାରୁ ଉତ୍କଳ ସମ୍ମିଳନୀ ସହିତ ସଂଶ୍ଳିଷ୍ଟ ହେଲେ । ସେତେବେଳେ ତାଙ୍କୁ ମାତ୍ର ବାଇଶ ବର୍ଷ ହୋଇଥିଲା । ସେହିବର୍ଷ ଡିସେମ୍ବର ୨୬ ଏବଂ ୨୭ ତାରିଖରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ପାରଳାଖେମୁଣ୍ଡିଠାରେ ବସିଲା । ଏହି ଅଧିବେଶନର ପରିଚାଳନା ଦାୟିତ୍ୱରେ ଥିଲେ କୃଷ୍ଣଚନ୍ଦ୍ର ଗଜପତି । ଦୁଇହଜାରରୁ ବେଶି ପ୍ରତିନିଧି ଓଡ଼ିଶା ବାହାରୁ ଆସି ଏହି ଅଧିବେଶନରେ ଯୋଗଦାନ କରିଥିଲେ । ସେହି ଅଧିବେଶନରେ ସଭାପତିତ୍ୱ କରିଥିଲେ ଜୟପୁରର ରାଜା ଶ୍ରୀ ଶ୍ରୀ ବିକ୍ରମ ଦେବ ବର୍ମା ଏବଂ ମହନ୍ତ ରାଧାକୃଷ୍ଣ ଗୋସ୍ୱାମୀ ଓ ବାବୁ ନିତ୍ୟାନନ୍ଦ ପଟ୍ଟନାୟକ ଅଭ୍ୟର୍ଥନା କମିଟିର ଯଥାକ୍ରମେ ଚେୟାରମେନ ଏବଂ ସେକ୍ରେଟେରୀ ଭାବରେ କାର୍ଯ୍ୟ ସମ୍ପାଦନା କରିଥିଲେ । ଏହି ଅଧିବେଶନର ଆଲୋଚନା ସଭାରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଏବଂ ଦେଶମିଶ୍ରଣ ଆନ୍ଦୋଳନର ପୁରୋଧାମାନେ ଅଂଶ ଗ୍ରହଣ କରିଥିଲେ ।

ଏହି ଅଧିବେଶନକୁ ସାଫଲ୍ୟମଣ୍ଡିତ କରିବା ପାଇଁ କୃଷ୍ଣଚନ୍ଦ୍ର ଗଜପତି ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଅଧିବେଶନରେ ଯୋଗଦେବା ପାଇଁ ଆସୁଥିବା ଲୋକମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ରେଳ ଚଳାଚଳର ବ୍ୟବସ୍ଥା କରାଯାଇଥିଲା । ନିଜେ ରେଳଷ୍ଟେସନକୁ ଯାଇ ଯାତ୍ରୀମାନଙ୍କୁ କାରରେ ଆଣି ସମ୍ମିଳନୀରେ ପହଞ୍ଚାଇବା ଥିଲା ତାଙ୍କର ମୁଖ୍ୟକାମ । ଅଧିବେଶନରେ ଯୋଗଦେବା ପାଇଁ ଦଶ ହଜାର ଟଙ୍କା ବ୍ୟକ୍ତିଗତ ଭାବରେ କୃଷ୍ଣଚନ୍ଦ୍ର ଗଜପତି ଦାନ କରିଥିଲେ । ଏହା ଓଡ଼ିଶା ପାଇଁ ଏକ ଅବିସ୍ମରଣୀୟ ଅଧ୍ୟାୟ ହୋଇ ରହିବ ।

ଏହି ଅଧିବେଶନରେ କେତେଗୁଡ଼ିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ସେଗୁଡ଼ିକ ହେଲା :—

(୧) ଏହି ଅଧିବେଶନ କାମନା କରେ ଯେ ବ୍ରିଟିଶ ସରକାର ଯୁଦ୍ଧରେ ଜୟଲାଭ କରୁ ।

(୨) ଏହି ଅଧିବେଶନ ଦୃଢ଼ତା ସହ ଦାବୀ କରୁଛି ଯେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳକୁ ଏକାଠିକରି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରାଯାଉ ।

(୩) ବ୍ରିଟିଶ ସରକାର ଓଡ଼ିଆ ଭାଷାକୁ ସଧିଭୂମି ଜୟପୁର, ଫୁଲଝର, ପଦ୍ମପୁର ଅଞ୍ଚଳରେ ମୁଖ୍ୟଭାଷା ଭାବରେ ପ୍ରଚଳନ କରନ୍ତୁ ଏବଂ ଓଡ଼ିଆମାନଙ୍କ ପାଇଁ ସେହି ଅଞ୍ଚଳଗୁଡ଼ିକରେ ଶିକ୍ଷାର ବ୍ୟବସ୍ଥା ତୁରନ୍ତ କରିବା ପାଇଁ ଏହି ଅଧିବେଶନ ଦାବୀକରେ ।

(୪) ଏହି ଅଧିବେଶନ ଦାବୀକରେ ଯେ ଓଡ଼ିଆମାନଙ୍କ ପାଇଁ ଏକ ଅଲଗା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଉ ।

(୫) ପ୍ରତ୍ୟେକ ସ୍କୁଲରେ ଓଡ଼ିଆ ଶିକ୍ଷକ ଏବଂ ଓଡ଼ିଆ ଇନ୍‌ସପେକ୍ଟରଙ୍କ ନିଯୁକ୍ତ କରାଯିବା ବ୍ୟବସ୍ଥା କରାଯାଉ ।

(୬) ଏକ ରେଲ ଲାଇନ୍ ଖୋର୍ଦ୍ଧାଠାରୁ ସମ୍ବଲପୁର ପର୍ଯ୍ୟନ୍ତ ଖୋଲିବା ପାଇଁ ଏହି ଦଶମ ଅଧିବେଶନ ତାର ଦାବୀ ଜଣାଉଛି ।

(୭) ଜୟପୁରକୁ ଏକ ସ୍ୱତନ୍ତ୍ର ଜିଲ୍ଲା ରୂପେ ଘୋଷଣା କରାଯାଉ ।

ଶେଷରେ ମଧୁସୂଦନ ଦାସ ଏକ ଦୀର୍ଘ ଇଂରେଜୀ ବକ୍ତୃତା ଦେଇଥିଲେ । ତାଙ୍କ ଭାଷଣରେ ସେ କହିଥିଲେ ଯେ ଏହି ଆନ୍ଦୋଳନର ମୁଖ୍ୟସ୍ଥାନ ହେଉଛି ପାରଳାଖେମୁଣ୍ଡି ଏବଂ କୃଷ୍ଣଚନ୍ଦ୍ର ଗଜପତି ହେଉଛନ୍ତି ଏହାର ଏକ ଐକାନ୍ତିକ ପୃଷ୍ଠପୋଷକ ।

କୃଷ୍ଣଚନ୍ଦ୍ର ଗଜପତି ରାଜତ୍ୱ କରିବାର ତିନିବର୍ଷ ଭିତରେ ଓଡ଼ିଶାର ଲୋକମାନଙ୍କ ମଧ୍ୟରେ ଶ୍ରଦ୍ଧାଭାଜନ ହୋଇ ଉଠିଲେ ।

ସେ 'ମହେନ୍ଦ୍ରତନୟା' ନଦୀ କୂଳରେ 'ବସନ୍ତବିହାର' ନାମକ ଏକ ସୁନ୍ଦର ରାଜଭବନ ତିଆରି କରିଥିଲେ । ତାହା ତାଙ୍କର ରାଜଭବନଠାରୁ ଦୁଇ ମାଇଲ ଦୂରରେ ଅବସ୍ଥିତ ।

ବ୍ରିଟିଶ ସରକାର ୧୯୧୭ ସାଲରେ ସେକ୍ରେଟେରୀ ଇ: ଏସ: ମେଣ୍ଟେଗ୍ୟୁଙ୍କୁ ଡେପୁଟେସନ୍‌ରେ ଭାରତ ସରକାର ତଥା ରାଜନୈତିକ ନେତାମାନଙ୍କ ସହିତ କଥାବାର୍ତ୍ତା ହେବାପାଇଁ ପଠାଇଲେ । ମଣ୍ଟେଗ୍ୟୁ, ବଡ଼ଲାଟ ଲର୍ଡ଼ ଚେଲମସ୍ ଫୋର୍ଡ଼ଙ୍କ ସହିତ ଭାରତର ବିଭିନ୍ନ ଜାଗା ବୁଲି ବୁଲି ସୁବିଧା ଅସୁବିଧା ପର୍ଯ୍ୟବେକ୍ଷଣ କଲେ । ମଣ୍ଟେଗ୍ୟୁ ଏବଂ ଚେଲମସ ଫୋର୍ଡ଼ କଲିକତା ପରିଦର୍ଶନରେ ଆସିଲେ ୧୯୧୭ ସାଲ ଡିସେମ୍ବର ୧୧ ତାରିଖରେ । ସେତେବେଳେ ଉତ୍କଳ ସମ୍ମିଳନୀ ତରଫରୁ ମଧୁସୂଦନ ଦାସ, କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ,—ମଣ୍ଟେଗ୍ୟୁ ଏବଂ ଚେଲମସ୍ ଫୋର୍ଡ଼ଙ୍କୁ ଭେଟି ଏକ ଦାବୀ ପତ୍ର ଦେଲେ । ସେହି ଦାବୀ ପତ୍ରରେ ଲେଖାଥିଲା ଯେ, ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଯେଉଁ ଚାରୋଟି ପ୍ରଦେଶରେ ବିଭକ୍ତ କରାଯାଇଛି, ତାହା ଏକାଠି କରି ଗୋଟିଏ ସରକାରଙ୍କ ଅଧୀନରେ ରଖାଯାଉ । ଯଦି ତାହା ବର୍ତ୍ତମାନ ସମ୍ଭବ ହୋଇପାରୁ ନାହିଁ, ତାହାହେଲେ ବର୍ତ୍ତମାନ ପାଇଁ ବିହାର ଏବଂ ଓଡ଼ିଶା ମଧ୍ୟରେ କେବଳ ସମସ୍ତ ଅଞ୍ଚଳକୁ ସୀମିତ ରଖାଯାଉ । ପରେ ସୁବିଧା ଅନୁଯାୟୀ ଗୋଟିଏ ସରକାରଙ୍କ ଅଧୀନକୁ ଅଣାଯିବ ।

ଶେଷରେ ମଣ୍ଟେଗ୍ୟୁ ଏବଂ ଚେଲମସ ଫୋର୍ଡ଼ ବାଧ୍ୟ ହୋଇଥିଲେ ଓଡ଼ିଶା ଏବଂ ବିହାର ମଧ୍ୟରେ ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ସୀମିତ ରଖିବା ପାଇଁ ।

୧୯୨୨ ସାଲରେ ଯେତେବେଳେ ମଧୁସୂଦନ ବିହାର ଏବଂ ଓଡ଼ିଶା ସରକାରଙ୍କ ମନ୍ତ୍ରୀ ହେଲେ, ସେତେବେଳେ ବିହାର ଏବଂ ଓଡ଼ିଶାର ମିଳିତ ସରକାରଙ୍କର ବିଧାନସଭାରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳଗୁଡ଼ିକୁ ଏକାଠି କରିବା ପାଇଁ ସେହି ଗୃହୀତ ପ୍ରସ୍ତାବରେ କୁହାଯାଇଥିଲା । ଏହି ପରିପ୍ରେକ୍ଷୀରେ ୧୯୨୪ ସାଲରେ ଭାରତ ସରକାର ଗୋଟିଏ କମିଟି ନିଯୁକ୍ତ କଲେ । ମାତ୍ର ଦୁଇଜଣ ସଭ୍ୟଙ୍କୁ ନେଇ ଏହି କମିଟି ଗଠନ କରାଗଲା । ସେହି ଦୁଇଜଣ ସଭ୍ୟ ହେଲେ

ସି. ଏଲ୍. ଫିଲିପି ଓଡ଼ିଶାରୁ ଏବଂ ଏ. ସି. ଡଫ ଅବସର ପ୍ରାପ୍ତ ରାଜ୍ୟପାଳ ବିଶାଖାପାଟଣାରୁ । ଏହି କମିଟିର ନାମ ଦିଆଯାଇଥିଲା ଫିଲିପ୍—ଡଫ୍ କମିଟି ।

ଫିଲିପ୍—ଡଫ କମିଟିର ମୂଳ ଲକ୍ଷ୍ୟ ଥିଲା ଓଡ଼ିଶାର ବିଚ୍ଛିନ୍ନାଞ୍ଚଳରେ ବୁଲି ଜନମତ ସଂଗ୍ରହ କରି ସମ୍ମିଶ୍ରଣ ସମ୍ପର୍କରେ ଏକ ବିବରଣୀ ପ୍ରସ୍ତୁତ କରିବା । ସେହି କମିଟି ବିଶାଖାପାଟଣା ଏବଂ ଗଞ୍ଜାମର ବିଭିନ୍ନ ଅଞ୍ଚଳ ବୁଲି ପାରଳାଖେମୁଣ୍ଡି ରାଜାଙ୍କୁ ଦେଖା କଲେ । ଗଞ୍ଜାମର ବିଭିନ୍ନ ଅଞ୍ଚଳର ଜମିଦାରମାନଙ୍କ ସହିତ ସାକ୍ଷାତକରି ଏକ ସମ୍ପୂର୍ଣ୍ଣ ବିବରଣୀ ସରକାରଙ୍କ ପାଖରେ ଉପସ୍ଥାପିତ କଲେ ।

ଏହି କମିଟି ତାଙ୍କ ବିବରଣୀରେ ଦର୍ଶାଇଲେ ଯେ ଗଞ୍ଜାମ ଜିଲ୍ଲାରେ ଓଡ଼ିଆ ଭାଷା କେବଳ ନାଆଁକୁ ମାତ୍ର ଅଛି ଏବଂ ମାନ୍ଦ୍ରାଜରେ ଥିବା ଗଞ୍ଜାମ ଜିଲ୍ଲାରେ କେବଳ ଜଣେ ମାତ୍ର ଓଡ଼ିଆ ଅତିରିକ୍ତ ଜିଲ୍ଲାପାଳ ଭାବରେ ଅଛନ୍ତି । ଅନ୍ୟସବୁ ପୋଷ୍ଟମାଷ୍ଟରଠାରୁ ଆରମ୍ଭ କରି ପିଅନ ପର୍ଯ୍ୟନ୍ତ ସବୁ ତେଲୁଗୁ ଏବଂ ସେମାନେ ଓଡ଼ିଆ ମୋଟେ ପଢ଼ିପାରନ୍ତି ନାହିଁ । ସେହି କମିଟିର ବିବରଣୀ ଦ୍ୱାରା ଜଣାଗଲା ଯେ ସମସ୍ତ ଓଡ଼ିଆ ଜମିଦାରମାନଙ୍କୁ ଓଡ଼ିଶାକୁ ସ୍ଥାନାନ୍ତରିତ କରାଯିବ । ଯେପରି ପାରଳାଖେମୁଣ୍ଡିରେ ଗଜପତିଙ୍କର ରାଜବଂଶ ଓଡ଼ିଶା ସହିତ ସଂଶ୍ଳିଷ୍ଟ ।

କୃଷ୍ଣଚନ୍ଦ୍ର ଗଜପତି ପ୍ରସ୍ତାବ ଦେଲେ ଯେ ଭାଷାତତ୍ତ୍ୱ ଦୃଷ୍ଟିରୁ ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଉଚିତ । ଏହି ପ୍ରସ୍ତାବକୁ ମଧୁସୂଦନ ଦାସ ସମର୍ଥନ କଲେ ନାହିଁ; କିନ୍ତୁ କୃଷ୍ଣଚନ୍ଦ୍ର ଗଜପତିଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଏହା ଦିନେନା ଦିନେ ନିଶ୍ଚିତ ଭାବରେ ରୂପାୟିତ ହେବ ।

ଫିଲିପ୍—ଡଫ୍ କମିଟି ସେମାନଙ୍କ ବିବରଣୀରେ ସୂଚାଇଥିଲେ ଯେ ମାନ୍ଦ୍ରାଜରେ ବାସ କରୁଥିବା ଶିକ୍ଷିତ ଓଡ଼ିଆମାନଙ୍କର ସଂଖ୍ୟା ବେଶି । ଏଣୁ ସେହି ଓଡ଼ିଆ ଅଞ୍ଚଳଗୁଡ଼ିକୁ ଓଡ଼ିଶାର ଗୋଟିଏ ଶାସନାଧୀନରେ

ରଖିବା ଉଚିତ । ଶେଷରେ ସମ୍ପୂର୍ଣ୍ଣ ବିବରଣୀ ସଂଗ୍ରହ କରି ସାରିବାପରେ ସରକାର ଏକ ସିଦ୍ଧାନ୍ତରେ ପହଞ୍ଚିଲେ ଯେ ମାନ୍ଦ୍ରାଜରେ ଥିବା ଗଞ୍ଜାମ ଜିଲ୍ଲାକୁ ଓଡ଼ିଶା ସହିତ ମିଶାଇ ଦିଆଯିବା ଉଚିତ । ଏଣୁ କେତେଗୁଡ଼ିଏ ଅଞ୍ଚଳକୁ ନେଇ ଗଞ୍ଜାମ ଜିଲ୍ଲା ଗଠନ କରିବାର ପ୍ରୟାସ ହେଲା ଏବଂ ତାହା ଓଡ଼ିଶାର ହେଲା ଏକ ଅଂଶ ।

ସି: ଏଲ୍ ଫିଲିପ୍ ୧୯୩୦ ସାଲରେ କଟକଠାରେ ଏକ ସାଧାରଣ ସଭାରେ ଭାଷଣ ଦେଇ କହିଲେ ଯେ ଆମ କମିଟି ୧୯୨୪ରେ ଯେଉଁ ବିବରଣୀ ଓଡ଼ିଶା ମିଶ୍ରଣ ପାଇଁ ସରକାରଙ୍କ ପାଖରେ ଉପସ୍ଥାପିତ କଲା ତାହା ଗଞ୍ଜାମର ଆଗୁଆ ଦକ୍ଷ ଜମିଦାର ଏବଂ ପାରଳା ମହାରାଜାଙ୍କ ଉପଦେଶ ଦ୍ୱାରାହିଁ ସମ୍ଭବପର ହୋଇପାରିଲା ।

କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଶାପ୍ରଦେଶ ପାଇଁ ଆନ୍ଦୋଳନର ପୁରୋଧା ଏବଂ ମୁଖ୍ୟ ନେତା ଥିଲେ । ସେ ଲୋକମାନଙ୍କ ଭିତରେ ରାଜନୈତିକ ଚେତନାକୁ ଜାଗ୍ରତ କରି ଜନମତ ସୃଷ୍ଟି କରିବା ଏବଂ ଫିଲିପ୍—ଡଫ୍ କମିଟିକୁ ମତେଇ କାର୍ଯ୍ୟ ହାସଲ କରିବା ଥିଲା ତାଙ୍କର ମୂଳ ଲକ୍ଷ୍ୟ । ଏସବୁ କରିବା ସତ୍ତ୍ୱେ କୃଷ୍ଣଚନ୍ଦ୍ର ଗଜପତିଙ୍କ ପାଖରୁ ଯାଇ ଓଡ଼ିଆ ଆନ୍ଦୋଳନର ପୁରୁଖାନେତା ହିସାବରେ ନାଁ ରହିଲା ମଧୁସୂଦନ ଦାସଙ୍କର ।

ଯାହାହେଉ ଶେଷରେ ଭାରତ ସରକାର ଓଡ଼ିଆମାନଙ୍କ ପାଇଁ ଠିକଏ ଦୟା ପରବଶ ହେଲେ । ବିହାର ଏବଂ ଓଡ଼ିଶା ସରକାର ଇଉ. ଏନ୍. ସେନ୍ ନାମକ ଜଣେ ବଙ୍ଗାଳୀ ଅଫିସରଙ୍କୁ ନିଯୁକ୍ତ କଲେ । ଗଞ୍ଜାମ ଜିଲ୍ଲାର ଅର୍ଥନୀତି ସମାସ୍ୟାର ଅନୁଧ୍ୟାନ କରିବା ଥିଲା ତାଙ୍କର କାମ । ତାପରେ ଗଞ୍ଜାମ ଜିଲ୍ଲାକୁ କେତେଗୁଡ଼ିଏ ତାଲୁକ ଏବଂ ସେମାନଙ୍କର ଶାଖାରେ ବିଭକ୍ତ କରାଗଲା । ତାଲୁକା ଏବଂ ତାର ଶାଖା ମିଶି ସମୁଦାୟ ୧୫ଟି ହେଲା ।

୧୯୨୭ ରୁ ୧୯୩୮ ସାଲ ପର୍ଯ୍ୟନ୍ତ କୃଷ୍ଣଚନ୍ଦ୍ର ଗଜପତି ରୟାଲ ଏଗ୍ରିକଲଚର କମିଶନର ଏକ ସଭ୍ୟ ଭାବରେ ନିଯୁକ୍ତ ହେଲେ । ସେହି

ପରିଷଦର ଚେୟାରମେନ କୃଷ୍ଣଚନ୍ଦ୍ର ଗଜପତିଙ୍କର ପ୍ରତ୍ୟେକ ପ୍ରସ୍ତାବକୁ ଗ୍ରହଣ କରି ନେଉ ଥିଲେ ।

କୃଷ୍ଣଚନ୍ଦ୍ର ଗଜପତିଙ୍କର କୃଷି କ୍ଷେତ୍ରରେ ବହୁତ ଆଗ୍ରହ ଥିଲା । ସେ ତାଙ୍କର ଅସଂଖ୍ୟ ଓଡ଼ିଆ ଭାଇ ଭଉଣୀଙ୍କ ମଙ୍ଗଳ ପାଇଁ ଆକୃଷ୍ଟ ଚିତ୍ତରେ ନିଜର ରାଜକୋଷରୁ ଅର୍ଥଦାନ କରୁଥିଲେ ।

ରୟାଲ ଏଗ୍ରିକଲଚର କମିସନର ସଭ୍ୟ ଥିବା ସମୟରେ ସେ ୧୯୨୭ ନଭେମ୍ବରରେ ବର୍ମା ଗସ୍ତରେ ଯାଇଥିଲେ । ବର୍ମାର ହଜାର ହଜାର ଓଡ଼ିଆଶ୍ରମିକ ଭୁଣ୍ଡଦ୍ୱୋଇ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଅଭ୍ୟର୍ଥନା ଜଣାଇଥିଲେ । ଓଡ଼ିଆ ଶ୍ରମିକମାନଙ୍କ ତରଫରୁ ରେଙ୍ଗୁନ୍‌ର ପାର୍କଷ୍ଟ୍ରିଟରେ ଏକ ଅଭ୍ୟର୍ଥନା ସଭାର ଆୟୋଜନ କରାଯାଇଥିଲା । ଯେଉଁଥିରେ କୃଷ୍ଣଚନ୍ଦ୍ର ଗଜପତି ଏକ ସ୍ୱାଗତ ଭାଷଣ ଦେଇଥିଲେ । ବର୍ମାର ବିଭିନ୍ନ ଜାଗା ବୁଲି ସେ କୃଷିଜାତ ଦ୍ରବ୍ୟ ଉପରେ ଅନୁଧ୍ୟାନ କରିଥିଲେ । ସ୍ଥାୟୀବାସିନ୍ଦା ସେତେବେଳେ ହଜାର ହଜାର ଓଡ଼ିଆ ଭାବରେ ବର୍ମାରେ ବାସ କରୁଥିଲେ ।

ସେ ରାଜକୀୟ କୃଷି ପରିଷଦର ସଭ୍ୟ ଥିବା ଯୋଗୁ, ବର୍ମା ଗସ୍ତ ବାବଦରୁ ବହୁତ ଟଙ୍କା ପାଇଥିଲେ । ସେ ସମସ୍ତ ଟଙ୍କା ନିଜେ ନ ନେଇ ନିକଟ୍ଟ ଭୁନୁରରେ ନ୍ୟୁଟ୍ରିସନ୍ ରିସର୍ଚ୍ଚ ସେଣ୍ଟରର ସଂପ୍ରସାରଣ ପାଇଁ ସବୁ ଦାନ କରି ଦେଇଥିଲେ ।

ଭାରତ ଏକ କୃଷି ପ୍ରଧାନ ଦେଶ । ଏଣୁ କୃଷ୍ଣଚନ୍ଦ୍ର ଗଜପତି ଭାରତର ରାଜକୀୟ କୃଷି ପରିଷଦର ସଭ୍ୟଥିବା ସମୟରେ କୃଷି କ୍ଷେତ୍ରରେ ଅସୁବିଧା ଦୂର କରିବା କଥା ଚିନ୍ତା କରୁଥିଲେ । ସେ ବୁଝିଥିଲେ ଯେ କୃଷି ବିଷୟରେ ଗବେଷଣା କରି ବୈଜ୍ଞାନିକ ପ୍ରଣାଳୀ ପ୍ରୟୋଗ କରି ଏହି ଅସୁବିଧାକୁ ଦୂରେଇବାକୁ ପଡ଼ିବ । ଶେଷରେ ସେ ଅକ୍ଲାନ୍ତ ପରିଶ୍ରମ କରି ସଫଳତା ଲାଭକଲେ । ତାଙ୍କର କୃଷି କ୍ଷେତ୍ରରେ ବୈଜ୍ଞାନିକ ପଦ୍ଧତିର ଆବିଷ୍କାର ସାରାଦେଶରେ ସାଧାରଣତଃ କୃଷି କ୍ଷେତ୍ରରେ ବ୍ୟାପିଗଲା ।

ଏହାପରେ ଆସିଲା ଘୋର ଲଢ଼େଇର ଦିନ, ପ୍ରତିବାଦର ସମୟ । ଏକତା ଭାବରେ ସ୍ୱର ଉତ୍ତୋଳନ କରିବାର ବେଳ । ବ୍ରିଟିଶ ସରକାରଙ୍କ ତରଫରୁ ୧୯୨୭ରେ ସାଇମନ୍ କମିଶନ ଗଢ଼ାଗଲା । ଏହି କମିଶନରେ ସବୁ କେବଳ ଶ୍ୱେତାଙ୍ଗ ସଭ୍ୟରହିଲେ । ଇଂରେଜ ସରକାର ଧାରଣାଥିଲା ଯେ ଏହି ହ୍ୱାଇଟ୍ କମିଶନ ଦ୍ୱାରା ହିଁ ସମସ୍ତ ପ୍ଲାନଗୁଡ଼ିକ ସୁବିଧା ଅନୁଯାୟୀ ହୋଇ ପାରିବ । କୌଣସି ଭାରତୀୟଙ୍କୁ ସାଇମନ କମିଶନ୍‌ର ସଦସ୍ୟ ଭାବେ ନିଆଯାଇ ନଥିଲା ।

ସେହି ବର୍ଷ ଅର୍ଥାତ୍ ୧୯୨୭ ସାଲରେ ମାନ୍ଦ୍ରାଜରେ କଂଗ୍ରେସ ଦଳର ଏକ ବୈଠକ ବସିଲା । ଏବଂ ସେହି ବୈଠକରେ ଏକ ପ୍ରସ୍ତାବ ଗୃହୀତ ହେଲା ଯେ ବ୍ରିଟିଶ ସରକାରଙ୍କ ଦ୍ୱାରା ଗଢ଼ାଯାଇଥିବା ଉକ୍ତ କମିଶନରେ କୌଣସି ଭାରତୀୟ ସଭ୍ୟଙ୍କୁ ନିଆଯାଇ ନଥିବାରୁ କଂଗ୍ରେସ ଦଳର ନିର୍ଦ୍ଦେଶ ଅନୁଯାୟୀ ସମଗ୍ର ଦେଶରେ ତାକୁ ବାସନ କରାଯିବ ।

କଂଗ୍ରେସର ନିଷ୍ପତ୍ତି ସତ୍ତ୍ୱେ କୃଷ୍ଣଚନ୍ଦ୍ର ଗଜପତି ୧୯୨୮ ସାଲରେ ମାନ୍ଦ୍ରାଜଠାରେ ସେହି କମିଶନଙ୍କୁ ଏକ ଆବେଦନ ପତ୍ର ଦେବା ପାଇଁ ଦ୍ରୁତତାର ସହ ଆଗେଇ ଆସିଲେ । ସେ ସାଇମନ କମିଶନଙ୍କୁ ଏକ ନିବେଦନରେ କହିଥିଲେ ଯେ ଦକ୍ଷିଣର ଓଡ଼ିଆଭାଷାଭାଷୀ ଅଞ୍ଚଳର ମିଶ୍ରଣ ତୁରନ୍ତ ହେଉ । କୃଷ୍ଣଚନ୍ଦ୍ର ଗଜପତିଙ୍କର ଏହି ଉକ୍ତି ବହୁତ ଓଡ଼ିଆ ପ୍ରତିନିଧିଙ୍କୁ ଉତ୍ସାହିତ କରିଥିଲା ।

ତାପରେ ଉତ୍କଳ ସମ୍ମିଳନୀ ତରଫରୁ ମଧ୍ୟ ଏକ ଦାବୀପତ୍ର ଦିଆଗଲା ଯେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ତୁରନ୍ତ ଘୋଷଣା କରାଯାଉ ।

ପୁଣି ଓଡ଼ିଶାର ଜନଗଣଙ୍କ ପକ୍ଷରୁ ମଧ୍ୟ ଏକ ଦାବୀପତ୍ର ଦିଆଯାଇଥିଲା । ସେହି ଦାବୀ ପତ୍ରରେ କୁହାଯାଇଥିଲା ଯେ ୧୫ ନିୟୁତ ଓଡ଼ିଆମାନଙ୍କ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ପାଇଁ ଯେଉଁ ଦାବୀ କରାଯାଇଛି ତାହା ଅଯୌକ୍ତିକ କିମ୍ବା ଛୁଆ ଖେଳ ନୁହେଁ । ଲକ୍ଷ ଲକ୍ଷ ଓଡ଼ିଆ ଲୋକମାନଙ୍କର ସ୍ୱାର୍ଥ ଦୃଷ୍ଟିରୁ

ଏବଂ ସେମାନଙ୍କର ସୁରକ୍ଷା ଦୃଷ୍ଟିରୁ ଓଡ଼ିଶାକୁ ତଥା ଓଡ଼ିଶାର ବିଚ୍ଛିନ୍ନାଞ୍ଚଳକୁ ଏକାଠି କରି ଏକ ସ୍ୱତନ୍ତ୍ର ପ୍ରଦେଶ କରି ଗଢ଼ିବା ଏକାନ୍ତ ଆବଶ୍ୟକ ।

୧୯୩୦ ସାଲରେ କୃଷ୍ଣଚନ୍ଦ୍ର ଗଜପତି ମାନ୍ଦ୍ରାଜ ବିଧାନସଭା ପାଇଁ ଗଞ୍ଜାମ ନିର୍ବାଚନ ମଣ୍ଡଳୀରୁ ଲଢ଼ିଲେ ଏବଂ ଶେଷରେ ଅତ୍ୟଧିକ ଭୋଟ ପାଇ ଜିତିଲେ । ପାରଳାଖେମୁଣ୍ଡି ସେତେବେଳେ ମାନ୍ଦ୍ରାଜରେ ଥିବା ଯୋଗୁଁ ସେ ମାନ୍ଦ୍ରାଜର ରାଜନୈତିକ କ୍ଷେତ୍ରରେ ଏକ ପୁରୁଖା ନେତା ଭାବରେ ପରିଚିତ ହେଲେ ।

ହଠାତ୍ ତାଙ୍କର ସ୍ତ୍ରୀ ଦୁଇ ଗୋଟି ଶ୍ରେଷ୍ଠ ସନ୍ତାନଙ୍କର ଲାଳନପାଳନ ଦାୟିତ୍ୱ କୃଷ୍ଣଚନ୍ଦ୍ର ଗଜପତିଙ୍କ ଉପରେ ନ୍ୟସ୍ତକରି ସ୍ୱର୍ଗବାସ କରିଥିଲେ । ଏହାତାଙ୍କୁ ଏକ ବଡ଼ ଧରଣର ଆଘାତ ଦେଇଥିଲା । ତଥାପି ସେ ହତୋତ୍ସାହ ନହୋଇ ତାଙ୍କର ଜନ୍ମମାଟି ଓଡ଼ିଶା ପ୍ରତି ଧ୍ୟାନ ଦେଇଥିଲେ ।

ସାଇମନ କମିଶନର ବିବରଣୀ ୧୯୩୦ ସାଲ ମେ ମାସ ୨୭ ତାରିଖରେ ପ୍ରକାଶ ପାଇଥିଲା । କିନ୍ତୁ ଏହି ବିବରଣୀରେ ଓଡ଼ିଶା ପ୍ରଦେଶ ଗଠନର କୌଣସି ଆଭାସ ନଥିବା ଯୋଗୁଁ ଏହାର ବିରୋଧରେ ଆନ୍ଦୋଳନ ଚାଲିଲା । ଏହାକୁ ପ୍ରଶମିତ କରିବା ପାଇଁ ଇଂରେଜ ସରକାର ପ୍ରଥମ ଗୋଲଟେବୁଲ ବୈଠକ ଲଣ୍ଡନଠାରେ କରିବା ପାଇଁ ଆହ୍ୱାନ କଲେ । ଏହି ଗୋଲଟେବୁଲ ବୈଠକ ଲଣ୍ଡନଠାରେ ୧୯୩୦ ସାଲ ନଭେମ୍ବର ୧୨ ତାରିଖରୁ ଆରମ୍ଭ ହୋଇ ୧୯୩୧ ସାଲ ଜାନୁୟାରୀ ୧୯ ତାରିଖ ପର୍ଯ୍ୟନ୍ତ ଚାଲିଲା । ଏହି ବୈଠକରେ ଭାଷା ଭିତ୍ତିରେ ସିନ୍ଧୁ ପ୍ରଦେଶ ଗଠନ ସମ୍ବନ୍ଧରେ ବିଚାର କରିବା ପାଇଁ କାର୍ଯ୍ୟସୂଚୀରେ ପ୍ରସ୍ତାବ ଥିଲା । କିନ୍ତୁ ଦୁଃଖର କଥା ଓଡ଼ିଶା ପ୍ରଦେଶ ଗଠନ କଥା କାର୍ଯ୍ୟସୂଚୀରେ ଅନ୍ତର୍ଭୁକ୍ତ ନଥିଲା । ଏହି ବୈଠକରେ ପ୍ରତିନିଧିତ୍ୱ କରିବାପାଇଁ ଓଡ଼ିଆମାନଙ୍କ ତରଫରୁ ବିହାର ଏବଂ ଓଡ଼ିଶା ସରକାରଙ୍କ ତରଫରୁ କୃଷ୍ଣଚନ୍ଦ୍ର ଗଜପତି ମନୋନୀତ ହୋଇଥିଲେ । ଏହି ଖବର ପାଇବା ସଙ୍ଗେ ସଙ୍ଗେ ଚିକିଟିର ରାଜା ସାହେବ ଗୌରଚନ୍ଦ୍ର ଗଣପତି ଦେବ କନିକା ରାଜା ସାହେବଙ୍କ

ଦ୍ୱାରା କୃଷ୍ଣଚନ୍ଦ୍ର ଗଜପତିଙ୍କୁ କହିଲେ ଯେ—"ମହାରାଜ ! ଆପଣ ତ ଲଣ୍ଡନ ଯାଉଛନ୍ତି ସେଠାରେ ଆମର ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ କଥା ଉତ୍ଥାପନ କରିବେ ।"

କୃଷ୍ଣଚନ୍ଦ୍ର ଗଜପତି ଲଣ୍ଡନଠାରେ ପହଞ୍ଚିବା ପୂର୍ବରୁ ପ୍ରଥମ ଗୋଲଟେବୁଲ ବୈଠକ ପାଇଁ କାର୍ଯ୍ୟସୂଚୀ ପ୍ରସ୍ତୁତ ସରିଥିଲା । ଓଡ଼ିଶା ସମ୍ପର୍କରେ ପ୍ରସ୍ତାବ ଆଲୋଚନା କର୍ଯ୍ୟସୂଚୀରେ ନଥିଲେ ମଧ୍ୟ କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଶା ପ୍ରସ୍ତାବ ଗୋଲଟେବୁଲ ବୈଠକରେ ଉତ୍ଥାପନ କରିବା ପାଇଁ ସମର୍ଥ ହୋଇପାରିଥିଲେ । ଉପରୋକ୍ତ ଘଟଣାଟି କୃଷ୍ଣଚନ୍ଦ୍ର ଗଜପତିଙ୍କ ମହାନୀୟ ବ୍ୟକ୍ତିତ୍ୱକୁ ପ୍ରକଟିତ କରିଅଛି । ସେ ପ୍ରଥମ ଗୋଲଟେବୁଲ ବୈଠକରେ ଯୋଗଦେବାକୁ ଯାଇ ଲଣ୍ଡନ ୨୦, ଚେଷ୍ଟର ଷ୍ଟ୍ରିଟ୍, ଏସ. ଡବ୍ଲ୍ୟୁ. ଆଇ ନାମକ ଏକ ଜାଗାରେ ରହୁଥିଲେ । ସେଠାରେ ରହଣିକାଳ ମଧ୍ୟରେ ବହୁତ ରାତି ଅନିଦ୍ରା ରହି ଚିନ୍ତା କରୁଥିଲେ ଯେ କିପରି ଏବଂ କେଉଁଠୁ ଓଡ଼ିଶାର କଥା ବୈଠକରେ ଆରମ୍ଭ କରିବେ । ଯାହାଦ୍ୱାରା ଇଂରେଜ ସରକାର ତାଙ୍କର ଯୁକ୍ତିକୁ ଖଣ୍ଡି ପାରିବେ ନାହିଁ । ଏହି ପରିପ୍ରେକ୍ଷୀରେ ଏକାଗ୍ର ଚିନ୍ତିତ ରହି, ସେ ରହୁଥିବା ବଙ୍ଗଳା ପାଖରେ ଏକ ଗଛତଳେ ବସି ତାଙ୍କର ଲେଖା ପ୍ରସ୍ତୁତ କରୁଥିଲେ । ଥରେ ରାମସ୍ୱାମୀ ମୁଦାଲିଏର ନାମକ ଜଣେ ଭଦ୍ରବ୍ୟକ୍ତି କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଲେଖୁଥିବା ଅବସ୍ଥାରେ ଦେଖି ପଚାରିଲେ – "ବୈଠକରେ ଆପଣ ଭାଷଣ ଦେବା ପାଇଁ ଯାହା ଲେଖୁଛନ୍ତି ସେଥିରେ ମୁଁ କିଛି ସାହାଯ୍ୟ କରିପାରିବି କି ?" ଏହାର ଉତ୍ତରରେ କୃଷ୍ଣଚନ୍ଦ୍ର ଗଜପତି କହିଥିଲେ, "ଆପଣ ମୋଠାରୁ ଭଲ ଭାଷାରେ ଲେଖିପାରନ୍ତି କିନ୍ତୁ ଓଡ଼ିଶା ଜନ୍ମଭୂମି ପାଇଁ ବିଶେଷ କରି ମୋ ହୃଦୟରେ ଯେଉଁ ସ୍ପନ୍ଦନ ସେ ବିଷୟ ଆପଣ ନା ବୁଝିପାରିବେ ନା ପ୍ରକାଶ କରି ପାରିବେ ।"

ଯଥାର୍ଥରେ ଏହା କୃଷ୍ଣଚନ୍ଦ୍ର ଗଜପତିଙ୍କର ଜନ୍ମଭୂମି ଓଡ଼ିଶା ପ୍ରତି ଏବଂ ବିଚ୍ଛିନ୍ନାଞ୍ଚଳ ବାସୀ ଓଡ଼ିଆମାନଙ୍କ ପାଇଁ ସ୍ନେହ ସହାନୁଭୂତି ସମ୍ପର୍କରେ ସୁସ୍ପଷ୍ଟ ସୂଚନା ପାଇଁ ।

୧୯୩୧ ସାଲ ଜାନୁୟାରୀ ୧୭ ତାରିଖ ଦିନ ଗୋଲଟେବୁଲ ବୈଠକରେ କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଏକ ଦୀର୍ଘ ମର୍ମସ୍ପର୍ଶୀ ଐତିହାସିକ ଉଦ୍‌ବୋଧନ ଦେବାର ସୁଯୋଗ ପାଇଲେ । ତାଙ୍କର ଭାଷଣରେ ସେ ବର୍ଣ୍ଣାଇ ଥିଲେ ଯେ, ଓଡ଼ିଶାର ପନ୍ଦର ନିୟୁତ ଲୋକ କପଟ ଭାବରେ ଭିନ୍ନଗୋଟି ପ୍ରଦେଶରେ ଅତ୍ୟାଚରିତ ଅବସ୍ଥାରେ ରହିଅଛନ୍ତି ଏବଂ ସେମାନଙ୍କର ଭବିଷ୍ୟତ ପାଇଁ, ସେମାନେ ଶାନ୍ତିରେ ନିଶ୍ୱାସ ମାରିବା ପାଇଁ, ସେମାନଙ୍କୁ ବିଭିନ୍ନ ପ୍ରାନ୍ତରୁ ଆଣି ଏକ ଶାସିତ ଅଞ୍ଚଳ ଅଧୀନରେ ରଖି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନର ତୁରନ୍ତ ଆବଶ୍ୟକ ।

ଗୋଲଟେବୁଲ ବୈଠକରେ ଉପସ୍ଥିତ ଥିବା ଅଧ୍ୟକ୍ଷ ତଥା ଅନ୍ୟାନ୍ୟ ସଦସ୍ୟଙ୍କ ଉପରେ ଗଜପତିଙ୍କର ବକ୍ତୃତାଟି ଅସାଧାରଣ ପ୍ରଭାବ ବିସ୍ତାର କରିପାରିଥିଲା । ସମସ୍ତେ କୃଷ୍ଣଚନ୍ଦ୍ର ଗଜପତିଙ୍କର ପ୍ରସ୍ତାବକୁ ସମର୍ଥନ କରିଥିଲେ ।

ତତ୍କାଳୀନ ଭାରତ ସରକାରଙ୍କର ସେକ୍ରେଟେରୀ ଅଫ୍ ଷ୍ଟେଟ୍ ସାର୍ ସାମୁଏଲ ହୋର ମୁକ୍ତ କଣ୍ଠରେ ସ୍ୱୀକାର କରି କହିଥିଲେ ଯେ—"ପାରଳା-ଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ପ୍ରଥମେ ଓଡ଼ିଶା ପ୍ରସଙ୍ଗ ୧୯୩୧ ସାଲରେ ହୋଇଥିବା ପ୍ରଥମ ଗୋଲଟେବୁଲ ବୈଠକରେ ଉତ୍ଥାପନ ପୂର୍ବକ ପ୍ରବଳ ଚାପ ଦବା ଫଳରେ ଏକ ସ୍ୱତନ୍ତ୍ର ପ୍ରଦେଶ ଅଧୀନରେ ଓଡ଼ିଆ ଭାଷାଭାଷୀମାନଙ୍କୁ ଏକତ୍ରୀତ କରିବା ସମସ୍ୟା ସମାଗତ ପ୍ରାପ୍ତ ବୋଲି ବ୍ରିଟିଶ ସରକାର ଶେଷ ସିଦ୍ଧାନ୍ତରେ ଉପନୀତ ହେଲେ । ଏଣୁ ଓଡ଼ିଆ ଜାତି ତାଙ୍କର ଏହି ସମ୍ମାନିତ ପ୍ରତିନିଧିଙ୍କଠାରେ ଚିରକୃତଜ୍ଞ ରହିବା ଉଚିତ ।" ଏହା କୃଷ୍ଣଚନ୍ଦ୍ର ଗଜପତିଙ୍କ ପକ୍ଷରେ କମ୍ ଗୌରବର ବିଷୟ ନୁହେଁ ।

ବୈଠକର ଶେଷରେ ଇଂରେଜ ସରକାର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ଇଚ୍ଛୁକ ବୋଲି ଘୋଷଣା କଲେ । ଏହି ଘୋଷଣା

ପରେ ପରେ ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ ଏବଂ ହରେକୃଷ୍ଣ ମହତାବ ଏକ ସମାଲୋଚନା ପତ୍ର କୃଷ୍ଣଚନ୍ଦ୍ର ଗଜପତିଙ୍କ ଉଦ୍ଦେଶ୍ୟରେ ବାଣ୍ଟିଲେ । ତଥାପି କୃଷ୍ଣଚନ୍ଦ୍ର ଗଜପତି ଏମାନେମାନ ବଚଳିତ ନ ହୋଇ ସେମାନଙ୍କର ସମାଲୋଚନାରେ ଭୃକ୍ଷେପ ନ କରି ଓଲଟା ସେମାନଙ୍କର ଅତି ଘନିଷ୍ଠରୁ ଘନିଷ୍ଠତର ହେବାକୁ ଲାଗିଲେ ।

୧୯୩୧ ସାଲ ଜୁନ୍ ମାସ ୧୨ ତାରିଖରେ ଲଣ୍ଡନଠାରେ ଏକ କମିଟି ଗଠନ କରାଗଲା । ସେହି କମିଟିର କର୍ତ୍ତବ୍ୟ ଥିଲା ଯେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ପୂର୍ବରୁ ଏକ ପ୍ରାଥମିକ ରିପୋର୍ଟ ଅନୁସନ୍ଧାନ କରି ଦେବେ ।

ପୁଣି ୧୯୩୧ ସାଲ ସେପ୍ଟେମ୍ବର ୧୮ ତାରିଖରେ ଭାରତ ସରକାର ଓଡ଼ିଶା ପ୍ରଦେଶ ଗଠନର ସୀମା ନିର୍ଦ୍ଧାରଣ କରିବା ପାଇଁ ଆଉ ଏକ କମିଟି ଗଠନ କଲେ । ସେହି କମିଟିର ଚେୟାରମେନ ରହିଲେ ଶ୍ରୀଯୁକ୍ତ ଏସ୍.ପି. ଓଡ଼ନେଲ ।

ଦ୍ୱିତୀୟ ଗୋଲଟେବୁଲ ବୈଠକ ୧୯୩୧ ସାଲ ସେପ୍ଟେମ୍ବର ୭ ତାରିଖରୁ ଡିସେମ୍ବର ୧ ତାରିଖ ପର୍ଯ୍ୟନ୍ତ ଲଣ୍ଡନଠାରେ ବସିଲା । ଏହି ବୈଠକରେ ଭି. ଭି. ଗିରି ନଭେମ୍ବର ୧୦ ତାରିଖରେ ଅନ୍ଧ୍ରପ୍ରଦେଶ ଗଠନ ପାଇଁ ଏକ ଦାବୀପତ୍ର ଉପସ୍ଥାପିତ କଲେ । ସେ ଏହି ଦାବୀ ପତ୍ରରେ ଦର୍ଶାଇ ଥିଲେ ଯେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ବସ୍ତୁର-ଯୋଗ୍ୟ ହୋଇଥିବା ଯୋଗୁ ଆନ୍ଧ୍ର ମଧ୍ୟ ସେହିପରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ନିତାନ୍ତ ଆବଶ୍ୟକ । ଏହି ଦାବିପତ୍ର ଦେବା ସାଙ୍ଗେ ସାଙ୍ଗେ ସେ କୃଷ୍ଣଚନ୍ଦ୍ର ଗଜପତିଙ୍କ ଦାବିକୁ ସମର୍ଥନ କରିଥିଲେ ।

ପରେ ପରେ ବି. ଶିବରାଓ ମଧ୍ୟ କର୍ଣ୍ଣାଟକ ଏକ ସ୍ୱତନ୍ତ୍ର ପ୍ରଦେଶ ପାଇଁ ଦାବି ଉପସ୍ଥାପିତ କଲେ । ଏହି ଦାବୀ ମଧ୍ୟ କୃଷ୍ଣଚନ୍ଦ୍ର ଗଜପତିଙ୍କର ସ୍ୱତନ୍ତ୍ର ଓଡ଼ିଶା ଦାବୀପତ୍ରକୁ ଭିତ୍ତି କରି ପ୍ରସ୍ତୁତ କରାଯାଇଥିଲା । ବି. ଶିବରାଓ ମଧ୍ୟ କୃଷ୍ଣଚନ୍ଦ୍ର ଗଜପତିଙ୍କ ଦାବୀକୁ ସମର୍ଥନ କରିଥିଲେ ।

କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଶା ତରଫରୁ ଓଡ଼ନେଲ କମିଟି ସହିତ ସଦସ୍ୟ ଭାବରେ ସଂଶ୍ଳିଷ୍ଟ ଥିଲେ । ଏହି କମିଟି ଓଡ଼ିଶାର ସୀମା ନିର୍ଦ୍ଧାରଣ କରିବା ପାଇଁ ଭାରତ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲା ।

ଉକ୍ତ କମିଟିରେ ବାହାର ଜାଗାରୁ ଅନ୍ୟ କେତେଜଣ ମଧ୍ୟ ସଦସ୍ୟ ଥିଲେ । ସେମାନେ ହେଲେ ବମ୍ବେରୁ ଏଚ. ଏମ୍. ମେହେଟା, ଆସାମରୁ ଟି. ଆର. ଫୋକନ, ବିହାରରୁ ସଚ୍ଚିଦାନନ୍ଦ ସିହ୍ନା ଏବଂ ତେଲୁଗୁମାନଙ୍କ ତରଫରୁ ଥିଲେ ସି. ଭି. ଏସ. ନରସିଂହ ରାଜ ।

ଏହି କମିଟିର ପ୍ରଥମ ବୈଠକ ପାଟନାଠାରେ ୧୯୩୧ ସାଲ ନଭେମ୍ବର ୭ ତାରିଖରେ ବସିଲା । ଓଡ଼ିଶାର ସୀମା ନିର୍ଦ୍ଧାରଣ କିପରି କରାଯିବ ସେହି ବିଷୟ ଏହି ବୈଠକରେ ଆଲୋଚନା ହେଲା । ତାପରେ ସେହି କମିଟି ଚାଇବାସା, ସମ୍ବଲପୁର, ରାଇପୁର, ମେଦିନୀପୁର, ଗୋପାଳପୁର, ଓ୍ୱାଲଟିୟର; କାକିନଡ଼ା ଏବଂ କଟକ ପରିଦର୍ଶନ କରିଥିଲେ ।

କୃଷ୍ଣଚନ୍ଦ୍ର ଗଜପତିଙ୍କର କେତେଜଣ ବିପକ୍ଷ ଲୋକ କଟକରୁ ବାହାରୁଥିବା ଏକ ସମ୍ବାଦ ପତ୍ରରେ ତାଙ୍କ ସମାଲୋଚନା କରି ସମ୍ବାଦମାନ ବାହାରକଲେ । ସେହି ସମାଲୋଚନା ସମ୍ବନ୍ଧରେ କୁହାଗଲା ଯେ ଓଡ଼ିଆମାନଙ୍କ ତରଫରୁ କୃଷ୍ଣଚନ୍ଦ୍ର ଗଜପତି ଓଡ଼ନେଲ କମିଟିର ସଦସ୍ୟ ଥାଇ ମଧ୍ୟ କିଛି ନିଷ୍ପତ୍ତି ନେଇପାରୁ ନାହାନ୍ତି । ତାଙ୍କ ଦ୍ୱାରା ବରଂ ଓଡ଼ିଆମାନଙ୍କର ଅବନତି ଘଟିବ ସିନା ଉନ୍ନତି ହେବ ନାହିଁ । ଏଣୁ ତୁରନ୍ତ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ବାଦଦେଇ ଅନ୍ୟଜଣେ ପୁରୁଖା ସଦସ୍ୟଙ୍କୁ ଓଡ଼ନେଲ କମିଟିରେ ନିଯୁକ୍ତ କରାଯିବା ଆବଶ୍ୟକ । ଯେତେବେଳେ କୃଷ୍ଣଚନ୍ଦ୍ର ଗଜପତି ଏହି ସମ୍ବାଦ ପାଇଲେ, ତତ୍‌କ୍ଷଣାତ୍ କମିଟିରୁ ସଦସ୍ୟ ପଦରୁ ଇସ୍ତଫା ଦେଲେ । ସେ ଚାହୁଁ ନଥିଲେ ଯେ ଜାତିର ବ୍ୟକ୍ତିଗତ ସମ୍ମାନ ଉପରେ ଆଞ୍ଚ ଆସୁ । ସେ ତାଙ୍କର ଇସ୍ତଫା ପତ୍ରରେ ଦର୍ଶାଇଥିଲେ ଯେ ସମ୍ବାଦ ପତ୍ରର ଲେଖା ଅନୁଯାୟୀ ସେ ମଧ୍ୟ ଚାହାନ୍ତି ଯେ ଓଡ଼ିଆମାନଙ୍କର

ସ୍ୱତ ଦୃଷ୍ଟିରୁ ଓଡ଼ିଆମାନଙ୍କ ତରଫରୁ ଅନ୍ୟ ଜଣେ ସୁବୁଝା ସଦସ୍ୟ ପାତ୍ରାରକ ତାଙ୍କଠାରୁ ଅଧିକ ଜ୍ଞାନ ଅଛି ସେ ସଦସ୍ୟପଦରେ ଓଡ଼ନେଲ କମିଟି ସଦସ୍ୟ ଭାବରେ ରହନ୍ତୁ ।

କୃଷ୍ଣଚନ୍ଦ୍ର ଗଜପତିଙ୍କ ଓଡ଼ନେଲ କମିଟିରୁ ଇସ୍ତଫା ଦେବା ସମ୍ବାଦ ଶୁଣିବା ମାତ୍ରେ ମାତ୍ରେ ଦଶାମ୍ବର ରଥ ଆର୍ତ୍ତବଲ୍ଲଭେଶ ଏବଂ ଗଣେଶ ମହାପାତ୍ର ଅଚ୍ଛରକ୍ତ ଜର୍ଜ ତାଙ୍କୁ ଦେଖାକଲେ ଏବଂ ତାଙ୍କର ଇସ୍ତଫାପତ୍ର ପ୍ରତ୍ୟାହାର କରନେବା ପାଇଁ ଅନୁରୋଧ କରି ପୁଣି ସେ ସେହି କମିଟିରେ ସଦସ୍ୟଭାବରେ ରହିବା ପାଇଁ ଆବେଦନ କଲେ ।

ଏହି ପରିପ୍ରେକ୍ଷୀରେ ସତ୍ୟନାରାୟଣ ରାଜଗୁରୁ ମଧ୍ୟ ତାଙ୍କୁ ଏକ ପତ୍ର ୩ । ୧୧ । ୩୧ ତାରିଖରେ ଲେଖି ଜଣେଇଲେ ଯେ "ଆପଣଙ୍କ ଓଡ଼ନେଲ କମିଟିରୁ ଇସ୍ତଫା ପତ୍ର ଦେବା କଥା ଶୁଣି ପାରଳାଖେମୁଣ୍ଡିର ସମସ୍ତ ଓଡ଼ିଆ ଅଚମ୍ଭିତ ହୋଇ ଦୁଃଖରେ ଭାଙ୍ଗି ପଡ଼ିଛନ୍ତି ଏବଂ ଯଦି ଦୁଇଦିନ ମଧ୍ୟରେ ଯେତେବେଳେ ଏହି ସମ୍ବାଦ ସାରା ଓଡ଼ିଶାରେ ଖେଳିଯିବ ସେତେବେଳେ ଓଡ଼ିଶାର ଏକ କୋଟି ଓଡ଼ିଆ ଲୋକ ଦୁଃଖରେ ମର୍ମାହତ ହୋଇ ପଡ଼ିବେ । ପାରଳାଖେମୁଣ୍ଡିର ଲୋକମାନେ ଆପଣଙ୍କ ଭଳି ପ୍ରତିଭାବାନ ଲୋକଙ୍କୁ ପାଇ ନିଜକୁ ଗୌରବାନ୍ୱିତ ମନେ କରୁଛନ୍ତି । ଆପଣ ଯେଉଁ ଏକକୋଟି ଓଡ଼ିଆମାନଙ୍କ ପାଇଁ ପ୍ରଥମ ଗୋଲଟେବୁଲ ବୈଠକରେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ସ୍ୱର ଉତ୍ତୋଳନ କରିଥିଲେ ତାହା ପାରଳାଖେମୁଣ୍ଡିର ଓଡ଼ିଆମାନେ ଜୀବନରେ କେବେ ଭୁଲି ପାରିବେ ନାହିଁ । ଏଣୁ ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ପାଟନାରେ ହେବାକୁ ଯାଉଥିବା କମିଟିର ବୈଠକରେ ଆପଣଙ୍କର ଉପସ୍ଥିତ ନିହାତି ଦରକାର । ଆମେ ଭଗବାନଙ୍କଠାରେ ପ୍ରାର୍ଥନା କରୁଛୁ ଆପଣଙ୍କୁ ଜାତୀୟ ସ୍ତରରେ ଓଡ଼ିଶା ପାଇଁ ଆଲୋଚନା କରିବାକୁ ମନୋବଳ ଦିଅନ୍ତୁ । ଶେଷରେ ମୁଁ ଓଡ଼ିଶାର ଅଗଣିତ ଜନତାଙ୍କ ତରଫରୁ ଅନୁରୋଧ କରୁଛି ଯେ ଆପଣ ସେହି ଭ୍ରାନ୍ତମୂଳକ ସମ୍ବାଦକୁ ଭୁଲି ଓଡ଼ନେଲ କମିଟିର ସଦସ୍ୟ ଭାବରେ

ଉକ୍ତ ପାଟନାଠାରେ ହେବାକୁ ଯାଉଥିବା ବୈଠକରେ ଯୋଗଦାନ କରି ଆମର ଚିର ଈପ୍‌ସିତ ଇଚ୍ଛାକୁ ପୂରଣ କରନ୍ତୁ ।"

ଶେଷରେ କୃଷ୍ଣଚନ୍ଦ୍ର ଗଜପତି ତାଙ୍କର ଅଗଣିତ ଜନତା ଏବଂ ଘନିଷ୍ଠ ବନ୍ଧୁମାନଙ୍କର ଅନୁରୋଧକୁ ଗୋଡ଼ରେ ଠେଲି ଦେଇନପାରି ଓଡ଼ନେଲ କମିଟିର ସଦସ୍ୟ ଭାବରେ ରହିଲେ ।

ଓଡ଼ନେଲର ସୀମା ନିର୍ଦ୍ଧାରଣ କମିଟିକୁ ଉତ୍କଳ ସମ୍ମିଳନୀ ତରଫରୁ ଏବଂ ବିଭିନ୍ନ ସଙ୍ଗଠନ ତରଫରୁ ଓଡ଼ିଶାପ୍ରଦେଶ ଗଠନ ପାଇଁ ଦାବୀପତ୍ରମାନ ଦିଆଗଲା । ୧୯୩୨ ସାଲ ଏପ୍ରିଲ ୧୯ ତାରିଖରେ ଓଡ଼ନେଲ କମିଟିର ରିପୋର୍ଟ ପ୍ରକାଶ ପାଇଲା । ସେହି ରିପୋର୍ଟରେ ଓଡ଼ନେଲ କମିଟି କୃଷ୍ଣଚନ୍ଦ୍ର ଗଜପତିଙ୍କୁ ପ୍ରଶଂସା କରି ଲେଖିଥିଲେ ଯେ—"ଜମିଦାରୀ ପାରଳା-ଖେମୁଣ୍ଡିକୁ ଓଡ଼ିଶା ସହିତ ମିଶାଇବା ପାଇଁ କୃଷ୍ଣଚନ୍ଦ୍ର ଗଜପତି ଓଡ଼ନେଲ କମିଟିରେ ଦକ୍ଷତାର ସହିତ ଯେଉଁ ଯୁକ୍ତି ବାଢ଼ିଥିଲେ ତାହା ଯଥାର୍ଥରେ ପ୍ରଶଂସନୀୟ ।"

ଶେଷରେ ଏହି କମିଟି ଠିକ୍ କରିଥିଲା ଯେ ୩୩୦୦୦ ବର୍ଗ ମାଇଲ ୮, ୨୭୭,୦୦ ଜନ ସଂଖ୍ୟାକୁ ନେଇ ଓଡ଼ିଶାପ୍ରଦେଶ ଗଠନ କରାଯିବ । କିନ୍ତୁ ବିବରଣୀଟି ନୈରାଶ୍ୟଜନକ ଥିଲା କାରଣ ସେଥିରେ ପାରଳାଖେମୁଣ୍ଡି ମେଦିନୀପୁର ସିଂହଭୂମିକୁ ଓଡ଼ିଶାରୁ ବାଦ ଦେବାପାଇଁ ସୁପାରିଶ କରାଯାଇଥିଲା । ଏହି ପରିପ୍ରେକ୍ଷୀରେ ଓଡ଼ନେଲ କମିଟିର ଅନ୍ୟତମ ସଦସ୍ୟ ଟି. ଆର. ଫୁକାନ ଓ ଏଚ. ଏମ. ମେହେଟା ଘୋର ପ୍ରତିବାଦ ପ୍ରକାଶ କରିଥିଲେ । ଏହି ସଦସ୍ୟମାନେ ପାରଳାଖେମୁଣ୍ଡି ଓ ଅନ୍ୟାନ୍ୟ ଅଞ୍ଚଳ ଓଡ଼ିଶା ସହିତ ସାମିଲ କରିବା ପାଇଁ ଅନୁକୂଳ ମତ ଦେଇଥିଲେ । କିନ୍ତୁ କମିଟିର ଅଧ୍ୟକ୍ଷ ଓଡ଼ନେଲ ଏହି ପ୍ରସ୍ତାବ ପାଇଁ ଅନୁରୂପ ମତ ପ୍ରକାଶ କରି ନଥିଲେ ।

ସେଇଥିପାଇଁ ପରେ ପରେ ବହୁ ବାଦାନୁବାଦ ଚାଲିଲା । ବିଭିନ୍ନ ସଦସ୍ୟ ବିଭିନ୍ନ ମତାମତ ଦେଇ ନିଜ ନିଜ ଫାଇଦା ଉଠାଇବା ପାଇଁ ଚାହିଁଲେ ।

୧୯୩୨ ସାଲ ଅଗଷ୍ଟ ୧୧ ତାରିଖରେ ଉତ୍କଳ ସମ୍ମିଳନୀର ଏକ ଜରୁରୀ ବୈଠକ ବସିଲା । ସେହି ବୈଠକକୁ କଲ୍ଲିକୋଟର ରାଜା ମର୍ଦ୍ଦରାଜ ଦେବ ଉଦ୍‌ଘାଟନ କଲେ ଏବଂ ବିହାର ଓଡ଼ିଶା ବିଧାନ ସଭାର ସଦସ୍ୟ ଲକ୍ଷ୍ମୀଧର ମହାନ୍ତି ସଭାପତିତ୍ୱ କରିଥିଲେ । ମୁଖ୍ୟ ସଙ୍ଗଠକ ଲିଙ୍ଗରାଜ ପାଣିଗ୍ରାହୀ ସ୍ୱାଗତ ଭାଷଣରେ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ତାଙ୍କର ପ୍ରଥମ ଗୋଲଟେବୁଲ ବୈଠକରେ ଓଡ଼ିଶାପ୍ରଦେଶ ପାଇଁ ଦୃଢ଼ ପ୍ରସ୍ତାବକୁ ଦର୍ଶାଇ ପ୍ରଶଂସା କରିଥିଲେ ।

ଏହି ବୈଠକରେ କେତେଗୋଟି ପ୍ରସ୍ତାବ ନିଆଗଲା । ସେଗୁଡ଼ିକ ହେଲା—(୧) ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ରୂପେ ଯଥାଶିଘ୍ର ଘୋଷଣା କରାଯାଉ । (୨) ଇଚ୍ଛାପୁର, ମଞ୍ଜୁଷା, ଜଳନ୍ତରା, ତରଳା, ଟିକେଲି, ସୋମପେଟା ତାଲୁକା ଏବଂ ସିଂହଭୂମି ଓ ଅନ୍ୟାନ୍ୟ ଓଡ଼ିଆଭାଷୀ ଅଞ୍ଚଳକୁ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରେ ନିଆଯାଉ ।

ଏହି ପରିପ୍ରେକ୍ଷୀରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଏକ କମିଟି ଗଠନ କରାଗଲା । ସେହି କମିଟିରେ ବିଭିନ୍ନ ପୁରୁଖା ସଦସ୍ୟ ନିଯୁକ୍ତ ହେଲେ ।

ଏହା ଉପରେ ବକ୍ତବ୍ୟ ରଖି ଯୋଗେନ୍ଦ୍ର ନାରାୟଣ ଆଚାର୍ଯ୍ୟ କହିଲେ ଯେ ସିଂହଭୂମିର ଓଡ଼ିଆ ଜନସଂଖ୍ୟା ବିହାରୀ ଜନସଂଖ୍ୟାଠାରୁ ବେଶି ହେବ । ଏଣୁ ସିଂହଭୂମି ଓଡ଼ିଶା ସହିତ ମିଶିବା ଦାବୀ ଯଥାର୍ଥ ଅଟେ ।

ଅକ୍ଟୋବର ୧୨ ତାରିଖ ୧୯୩୨ ସାଲରେ ରାଧାଚରଣ ଶ୍ରୀକରଣ ପଟ୍ଟନାୟକ ଉତ୍କଳ ହିତୈଷିଣୀ ସମାଜର ସଭାପତି ଏବଂ ସତ୍ୟନାରାୟଣ ରାଜଗୁରୁ ଏକ ବିଜ୍ଞପ୍ତିରେ କହିଲେ ଯେ ୧୭ ଅକ୍ଟୋବର ୧୯୩୨କୁ ଓଡ଼ିଶା ମିଶ୍ରଣ ଦିନ ଭାବରେ ପାଳନ କରାଯାଉ ଯାହାଦ୍ୱାରା କି ଓଡ଼ିଶାର ଜନଗଣ ଏହି ଦିଗରେ ଉତ୍ସାହିତ ହେବେ ।

ତୃତୀୟ ଗୋଲଟେବୁଲ ବୈଠକ ୧୯୩୨ ସାଲ ନଭେମ୍ବର ୧୭ ତାରିଖରୁ ଡିସେମ୍ବର ୨୪ ତାରିଖ ପର୍ଯ୍ୟନ୍ତ ବସିଲା । କଲ୍ଲିକୋଟ ମହାରାଜା

ରାମଚନ୍ଦ୍ର ମର୍ଦ୍ଦରାଜ ଏବଂ ତାଙ୍କ ସେକ୍ରେଟେରୀ ଜଗମୋହନ ପଟ୍ଟନାୟକ ତୃତୀୟ ଗୋଲଟେବୁଲ୍ ବୈଠକରେ ଯୋଗଦେବା ପାଇଁ ଲଣ୍ଡନ ଯାତ୍ରା କଲେ । ସେତେବେଳେ ସେ କହିଥିଲେ ଯେ "ମୁଁ ଭାରତ ତରଫରୁ ଏହି ବୈଠକରେ ଯୋଗଦେବା ପାଇଁ ଯାଉଥିବାରୁ ଓଡ଼ିଶାର ମିଶ୍ରଣ ପାଇଁ ମୁଁ ଯଥା ସାଧ୍ୟ ଚେଷ୍ଟା କରିବି ।"

ଯାହାହେଉ ୧୯୩୨ ସାଲ ଡିସେମ୍ବର ୨୪ ତାରିଖ ଥିଲା ଓଡ଼ିଆମାନଙ୍କ ପାଇଁ ଏକ ଐତିହାସିକ ଦିନ । ଏହି ଦିନ ଷ୍ଟେଟ ସେକ୍ରେଟେରୀ ଓଡ଼ିଶାପ୍ରଦେଶ ଗଠନ କରାଯିବ ବୋଲି ଘୋଷଣା କଲେ ।

ସେକ୍ରେଟେରୀ ଓଡ଼ିଶାପ୍ରଦେଶ ହେବ ବୋଲି ଘୋଷଣା କରିଥିବାରୁ ଖଲ୍ଲିକୋଟ ରାଜାଙ୍କ ପାଖକୁ ଏକ ଟେଲିଗ୍ରାମ ପଠାଇ ଏ. ପି. ପାତ୍ର ଓଡ଼ିଶାଲୋକଙ୍କୁ ଅନୁରୋଧ କରିଥିଲେ ଯେ ସଭାସମିତିମାନ କରି ସେକ୍ରେଟେରୀଙ୍କୁ ଓଡ଼ିଶାପ୍ରତି ତାଙ୍କର ଅବଦାନ ପାଇଁ ଧନ୍ୟବାଦ ଦବାର ବ୍ୟବସ୍ଥା କରନ୍ତୁ । ତଦନୁଯାୟୀ ବହୁତ ଯାଗାରେ ସଭାସମିତି କରାଗଲା । ୨୭ । ୧୨ । ୧୯୩୨ ତାରିଖରେ ପାରଳାଖେମୁଣ୍ଡିର ପଦ୍ମନାଭ ଥିଏଟର ହଲରେ ଏକ ସଭାକରାଯାଇ ସେକ୍ରେଟେରୀଙ୍କୁ ଧନ୍ୟବାଦ ଦିଆଯାଇଥିଲା । ସେହିପରି କଟକ ଟାଉନ ହଲରେ ମଧ୍ୟ ତଦନୁରୂପ ଏକ ସଭା କରାଯାଇ ବ୍ରିଟିଶ ସରକାର ଏବଂ ସେକ୍ରେଟେରୀ ସାମୁୟେଲ ହୋରଙ୍କୁ ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ରାଜି ହୋଇଥିବାରୁ ଧନ୍ୟବାଦ ଦିଆଯାଇଥିଲା । ପାରଳାଖେମୁଣ୍ଡିରେ ଅନ୍ୟଏକ ସଭା ଉତ୍କଳ ହିତୈଷିଣୀ ସମାଜ ତରଫରୁ ମଧ୍ୟ କରାଯାଇଥିଲା ।

୧୯୩୩ ସାଲ ମାର୍ଚ୍ଚ ୧୭ ତାରିଖରେ ବ୍ରିଟିଶ ସରକାରଙ୍କ ତରଫରୁ ଏକ ଶ୍ୱେତପତ୍ର ପ୍ରକାଶ ପାଇଥିଲା । କିନ୍ତୁ ଦୁର୍ଭାଗ୍ୟବଶତଃ କୃଷ୍ଣଚନ୍ଦ୍ର ଗଜପତିଙ୍କ ଈପ୍ସିତ ଅଞ୍ଚଳଗୁଡ଼ିକ ପ୍ରସ୍ତାବିତ ଓଡ଼ିଶାରୁ ବାଦ୍ ଯାଇଥିଲା । କୃଷ୍ଣଚନ୍ଦ୍ର ଗଜପତି ଏଥିରେ ମର୍ମାହତ ହୋଇ ପଡ଼ିଥିଲେ । କାରଣ ତାଙ୍କର ନିଜରାଜ୍ୟ ପାରଳାଖେମୁଣ୍ଡି ପ୍ରସ୍ତାବିତ ଓଡ଼ିଶା ପ୍ରଦେଶ ମଧ୍ୟରେ ନଥିଲା । ତଥାପି ସେ ସାହସ ହରାଇ ନଥିଲେ ।

୧୯୩୩ ସାଲ ଏପ୍ରିଲ ମାସରେ ୧୬ ଜଣ ସଭ୍ୟ ବିଶିଷ୍ଟ ଏକ ଜଏଣ୍ଟ ସିଲେକ୍ଟ କମିଟି ଲର୍ଡ ଲିନ୍‌ଲିଥଗୋଙ୍କ ଅଧ୍ୟକ୍ଷତାରେ ବିଲାତରେ ଗଠନ କରାଗଲା । ମଧୁସୂଦନ ଦାସଙ୍କ ଅନୁରୋଧରେ କୃଷ୍ଣଚନ୍ଦ୍ର ଗଜପତି ଜଏଣ୍ଟ ସିଲେକ୍ଟ କମିଟି ଆଗରେ ଏହି ପ୍ରସ୍ତାବ ଉପସ୍ଥାପନ କରିବା ପାଇଁ ବିଲାତ ଗଲେ । ତାଙ୍କ ସାଙ୍ଗରେ ଖଲ୍ଲିକୋଟ ରାଜା ଏବଂ ଲିଙ୍ଗରାଜ ପାଣିଗ୍ରାହୀ ମଧ୍ୟ ଗଲେ ।

ଜଏଣ୍ଟ ସିଲେକ୍ଟ କମିଟିରେ ଯେଉଁ ଦାବୀପତ୍ର ଉପସ୍ଥାପିତ କରାଗଲା, ସେଥିରେ କୃଷ୍ଣଚନ୍ଦ୍ର ଗଜପତି ଦର୍ଶାଇଥିଲେ ଯେ, ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରେ ବହୁତ ଲମ୍ବା ଚଉଡ଼ା ଜାଗା ରହିଛି । ବହୁ ଜାଗାସ୍ଥ ଭାଷା ଭିତ୍ତିରେ ଏବଂ କେତେକ ଗଠନମୂଳକ ରାଜ୍ୟ ଏବଂ ବ୍ୟକ୍ତିଙ୍କୁ ନେଇ ନୂତନ ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ପ୍ରସ୍ତାବ ଦିଆଯାଇଛି । କିନ୍ତୁ ଦୁଃଖର ବିଷୟ ଏହି ଯେ ପାରଳାଖେମୁଣ୍ଡି ସିଏକ ଗଞ୍ଜାମ ଜିଲ୍ଲାର ସବୁଠାରୁ ବଡ଼ ସହର ଯାହାର ଲୋକସଂଖ୍ୟା ୨୦,୦୭୭ ତାକୁ ଯଦି ବାଦ୍ ଦିଆଯାଇ ଓଡ଼ିଶା ପ୍ରଦେଶ ଗଠନ କରାଯାଏ, ତାହାହେଲେ ଦେହରୁ ମୁଣ୍ଡକୁ ଅଲଗା କଲେ ଯାହାହୁଏ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ଅବସ୍ଥା ମଧ୍ୟ ସେହିପରି ହେବ ।

ଏହି ଦାବୀ ପତ୍ରରେ ଆହୁରି ମଧ୍ୟ କୁହାଯାଇଥିଲା ଯେ ଫିଲିପ ଡଫ୍ କମିଟି ଏବଂ ଓଡ଼ନେଲ କମିଟିର ଅଧିକାଂଶ ସଭ୍ୟ ପାରଳାଖେମୁଣ୍ଡି ଓଡ଼ିଶା ସହିତ ମିଶ୍ରଣକୁ ସମର୍ଥନ କରିଛନ୍ତି । ପାରଳାଖେମୁଣ୍ଡି ଧର୍ମକ୍ଷେତ୍ର ଏବଂ ସାଂସ୍କୃତିକ କ୍ଷେତ୍ରରେ ଅଗ୍ରଣୀ ଥିବା ଯୋଗୁ ଏବଂ ଓଡ଼ିଆମାନଙ୍କର ସାଂସ୍କୃତିକ ଏବଂ ମାନସିକ କେନ୍ଦ୍ରସ୍ଥଳ ଯେଉଁଠାରେ ଓଡ଼ିଆ ଭାଷାର ଉନ୍ନତି କରିଛନ୍ତି ସେହି ରାଜ୍ୟ ପାରଳାଖେମୁଣ୍ଡି ପ୍ରସ୍ତାବିତ ଓଡ଼ିଶା ରାଜ୍ୟ ସହିତ ମିଶିବା ଏକାନ୍ତ ପ୍ରୟୋଜନ ।

ଶେଷରେ କୃଷ୍ଣଚନ୍ଦ୍ର ଗଜପତି ଜଏଣ୍ଟ ସିଲେକ୍ଟ କମିଟିର ଅଧ୍ୟକ୍ଷ ଲର୍ଡ ଲିନ୍‌ଲିଥଗୋଙ୍କୁ ପ୍ରଭାବିତ କରି ପାରିଥିଲେ ଏବଂ [illegible] ତତ୍କାଳୀନ ବଡ଼ଲାଟଙ୍କୁ ମଧ୍ୟ ପ୍ରଭାବିତ କରି ପ୍ରସ୍ତାବିତ ଓଡ଼ିଶା ସହିତ ପାରଳାଖେମୁଣ୍ଡି ଓ ଜୟପୁରକୁ ସାମିଲ କରିପାରିଥିଲେ ।

ଲୁକ୍କାୟିତ ଖବରରେ ଲଣ୍ଡନକୁ କେବଲ ଦ୍ୱାରା ସେକ୍ରେଟାରୀ ସାମୁଏଲ ହୋରଙ୍କୁ ଜଣାଇ ଦିଆଯାଇଥିଲା ଯେ ଓଡ଼ିଶାର ଲୋକମାନେ ପାରଳା ଏବଂ ଜୟପୁର ନ ହେଲେ ମଧ୍ୟ ଓଡ଼ିଶା ପ୍ରଦେଶ ଗଠନ ପାଇଁ ପ୍ରସ୍ତୁତ ଅଛନ୍ତି ।

ସୌଭାଗ୍ୟ କ୍ରମେ ସାମୁଏଲ ହୋର କୃଷ୍ଣଚନ୍ଦ୍ର ଗଜପତିଙ୍କ ସହିତ ଏହି ସମ୍ପର୍କରେ ଆଲୋଚନା କଲେ । କୃଷ୍ଣଚନ୍ଦ୍ର ଗଜପତି ଏହି ପ୍ରସ୍ତାବରେ ରାଜି ହୋଇ ନଥିଲେ ଏବଂ ଏହା ସତ୍ୟାସତ୍ୟ ବୁଝିବା ପାଇଁ ନିଜର ପଇସା ଖର୍ଚ୍ଚ କରି ଲଣ୍ଡନଠାରୁ ନିଜ ରାଜ୍ୟକୁ ଲୋକ ପଠାଇବା ପାଇଁ ପ୍ରସ୍ତାବ ଦେଇଥିଲେ । ଅନ୍ୟ ପକ୍ଷରୁ ପାରଳା ମହାରାଜାଙ୍କ ଯୁକ୍ତିକୁ ସମର୍ଥନ ଜଣାଇ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣ ନିମନ୍ତେ ବିଭିନ୍ନ ସ୍ଥାନରେ ସଭାସମିତି କରି ନିଷ୍ପତ୍ତିମାନ ବିଲାତକୁ ପଠାଇ କୃଷ୍ଣଚନ୍ଦ୍ର ଗଜପତି ହାତମୁଠାକୁ ଟାଣ କରିବାର ଉଦ୍ୟମକୁ ମଧ୍ୟ ଅବ୍ୟାହତ ରଖାଯାଇ ପାରିଥିଲା ।

ଏହି ଅବସରରେ ରାଧାନାଥ ରଥ, ସୂର୍ଯ୍ୟ ନାରାୟଣ ଦାସ, ହରିହର ମହାପାତ୍ର ଏବଂ ବ୍ରଜବନ୍ଧୁ ଦାସ ପ୍ରମୁଖ ବିଭିନ୍ନ ସଭାସମିତିମାନ କରି କେବଲ ଦ୍ୱାରା ବିଲାତକୁ ଜଣାଇଥିଲେ ଯେ, ପାରଳାଖେମୁଣ୍ଡି ଏବଂ ଜୟପୁର ବିନା ଓଡ଼ିଶା ପ୍ରଦେଶ ଗଠନ ହୋଇପାରେନା । କୃଷ୍ଣଚନ୍ଦ୍ର ଗଜପତି ମଧ୍ୟ ଜିଦ୍‌ରେ ରହିଲେ ଯେ "ପାରଳାଖେମୁଣ୍ଡି ଏବଂ ଜୟପୁର ଓଡ଼ିଶା ସହିତ ନ ମିଶିଲେ ମୁଁ ଓଡ଼ିଶାକୁ ଫେରିବି ନାହିଁ ।"

ଜଏଣ୍ଟ ସିଲେକ୍ଟ କମିଟି ସଦସ୍ୟ ମାନଙ୍କଠାରୁ ନିର୍ଭର ପ୍ରତିଶ୍ରୁତି ପାଇବା ପରେ କୃଷ୍ଣଚନ୍ଦ୍ର ଗଜପତି ୧୯୩୩ ସାଲ ଅଗଷ୍ଟ ୧୩ ତାରିଖରେ ଓଡ଼ିଶାକୁ ଫେରି ଆସିଥିଲେ । ତାଙ୍କୁ ପାଛୋଟି ଆଣିବା ପାଇଁ ପାରଳା-ଖେମୁଣ୍ଡିରେ ଏକ ବିରାଟ ଧରଣର ଜନସମାଗମ ହୋଇଥିଲା । ସେତେବେଳେ, ଜୁଣ୍ଡ ହୋଇଥିବା ଜନତାଙ୍କୁ ଉଦ୍‌ବୋଧନ ଦେଇ କୃଷ୍ଣଚନ୍ଦ୍ର ଗଜପତି, କହିଥିଲେ ।" ଆପଣମାନଙ୍କ ଦୃଢ଼ ସମର୍ଥନ ଏବଂ ମାଣିକେଶ୍ୱରୀଙ୍କ ଅପାର କରୁଣା ଯୋଗୁ ହିଁ ମୁଁ ଲଣ୍ଡନରୁ ସଫଳତାର ସହିତ ଫେରି ଆସିଲି "ଏହି ଘଟଣ ସମସ୍ତଙ୍କୁ ଅସାଧାରଣ ଉଦ୍ଦୀପନା ଯୋଗାଇଥିଲା ।

କିଛିଦିନ ପରେ କୃଷ୍ଣଚନ୍ଦ୍ର ଗଜପତି ତାଙ୍କର ଏକ ବନ୍ଧୁଙ୍କଠାରୁ ଲଣ୍ଡନରୁ ଏକ ପତ୍ର ପାଇଲେ । ସେହି ପତ୍ରରେ ଲେଖା ଥିଲା ଯେ ଜଏଣ୍ଟ ପାର୍ଲ୍ୟାମେଣ୍ଟାରି କମିଟି ଜୟପୁରକୁ ଓଡ଼ିଶା ସହିତ ମିଶାଇବା ପାଇଁ ଠିକ୍ କରିଛି କିନ୍ତୁ ପାରଳାଖେମୁଣ୍ଡି ଓଡ଼ିଶା ସହିତ ମିଶିବା କଥା କିଛି ଠିକ୍ କରାଯାଇନାହିଁ ।

କୃଷ୍ଣଚନ୍ଦ୍ର ଗଜପତି ଏହି ସମ୍ବାଦ ଶୁଣିବାପରେ ତିଳେହେଲେ ବିଚଳିତ ନହୋଇ ସାରା ଓଡ଼ିଶାରେ ଏକ ଜାଗରଣ ସୃଷ୍ଟି କରିବା ପାଇଁ ଲାଗିପଡ଼ିଲେ । ଏହି ପୃଷ୍ଠଭୂମିରେ ସତ୍ୟନାରାୟଣ ରାଜଗୁରୁ ସାରା ଓଡ଼ିଶାରେ ୧୯୩୪ ସାଲରୁ ଜାନୁୟାରୀ ୯ ତାରିଖକୁ ଏକ ପ୍ରତିବାଦ ଦିବସ ରୂପେ ପାଳନ କରିବାକୁ ଦୈନିକ ସମ୍ବାଦ ପତ୍ର "ଆଶା"ରେ ଡାକରା ଦେଲେ । କାରଣ ସେହିଦିନ ମାନ୍ଦ୍ରାଜର ତତ୍କାଳୀନ ରାଜ୍ୟପାଳ ପାରଳାଖେମୁଣ୍ଡି ପରିଦର୍ଶନରେ ଆସିବାର ପ୍ରସ୍ତାବ ଥିଲା ।

ହଠାତ୍ ଓଡ଼ିଶାର ଲୋକମାନଙ୍କ ପାଇଁ ଏକ ଦୁର୍ଭାଗ୍ୟ ଆସିଲା । ମଧୁସୂଦନ ଦାସ ୧୯୩୪ ସାଲ ଫେବୃୟାରୀ ୩ ତାରିଖ ଦିନ ପ୍ରାଣତ୍ୟାଗ କଲେ । ଏହା କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରତି ଦାରୁଣ ଆଘାତ ଥିଲା ।

୧୯୩୪ ସାଲ ଫେବୃୟାରୀ ୩ ତାରିଖରେ ହୋଇଥିବା ପ୍ରତିବାଦ ସଭାର ନିଷ୍ପତ୍ତି ଅନୁଯାୟୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଏକ କମିଟି ପାରଳାଖେମୁଣ୍ଡି ଓଡ଼ିଶା ସହିତ ମିଶ୍ରଣକୁ ଦାବୀ କରି ଗଭର୍ଣ୍ଣରଙ୍କ ଆଗରେ ଉପସ୍ଥାପିତ କରିବା ପାଇଁ ମାନ୍ଦ୍ରାଜ ଗଲେ । ଏହି କମିଟିରେ କେତେଜଣ ମୁଖ୍ୟ ସଦସ୍ୟ ରହିଲେ । ସେମାନେ ହେଲେ ଭୁବନେଶ୍ୱର ଦାସ, ବ୍ରଜସୁନ୍ଦର ଦାସ ଏବଂ କୃଷ୍ଣଚନ୍ଦ୍ର ଅଗ୍ରୱାଲ । ମାନ୍ଦ୍ରାଜ ରାଜ୍ୟପାଳଙ୍କୁ ଏହି କମିଟି ତରଫରୁ କୃଷ୍ଣଚନ୍ଦ୍ର ଗଜପତି ଏକ ଲିଖିତ ଆକାରରେ ଜଣାଇଲେ ଯେ ଓଡ଼ିଆମାନଙ୍କ ଦ୍ୱାରା ଗଠନ କରାଯାଇଥିବା ଉତ୍କଳ ସମ୍ମିଳନୀର ନିଷ୍ପତ୍ତି ଅନୁସାରେ ପାରଳାଖେମୁଣ୍ଡିକୁ ଓଡ଼ିଶା ସହିତ ମିଶ୍ରଣ ଯୁକ୍ତିଯୁକ୍ତ । କାରଣ ଏହାଦ୍ୱାରା ଓଡ଼ିଆ କିମ୍ବା ତେଲୁଗୁମାନଙ୍କର ସ୍ୱାର୍ଥରେ କୌଣସି ବାଧା ସୃଷ୍ଟି କରିବ ନାହିଁ । ସେମାନଙ୍କ ମଧ୍ୟରେ ବୁଝାମଣା ଠିକ ରହିବ ।

ଏହାପରେ ସେହି ବର୍ଷ ଏପ୍ରିଲ ମାସରେ ସେହି ଦଳ ଦିଲ୍ଲୀଗଲେ । ସେଠାରେ ତତ୍‌କାଳୀନ ବଡ଼ଲାଟଙ୍କର ବ୍ୟକ୍ତିଗତ ସେକ୍ରେଟାରୀଙ୍କ ଠାରୁ ଜାଣିବାକୁ ପାଇଲେ ଯେ ଓଡ଼ିଶାର ଜନ ସଂଖ୍ୟା ଏବଂ ସୀମା ନିର୍ଦ୍ଧାରଣରେ ଏକ ମାନଚିତ୍ର ତିଆରି କରି ଏଠାରେ ଉପସ୍ଥାପିତ କରିବା ନିହାତି ଆବଶ୍ୟକ । କୃଷ୍ଣଚନ୍ଦ୍ର ଗଜପତି ସାଙ୍ଗେ ସାଙ୍ଗେ ତାଙ୍କର ଦିଓ୍ୱାନଙ୍କୁ ଏକ ତାରବାର୍ତ୍ତା କରି ଜଣେଇଲେ । ଦିଓ୍ୱାନ ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ସତ୍ୟନାରାୟଣ ରାଜଗୁରୁ ଏବଂ ଅନ୍ୟମାନେ ଜନ ସଂଖ୍ୟା ଏବଂ ସୀମା ନିର୍ଦ୍ଧାରଣ ମାନଚିତ୍ର ପ୍ରସ୍ତୁତ କରି କୃଷ୍ଣଚନ୍ଦ୍ର ଗଜପତିଙ୍କ ପାଖକୁ ପଠାଇଲେ । ସେହି ମାନଚିତ୍ର ଏବଂ ଜନ ସଂଖ୍ୟାର ହିସାବ ତତ୍‌କାଳୀନ ବଡ଼ଲାଟ ଅନୁମୋଦନ କରି ଲଣ୍ଡନ ପଠାଇଲେ ।

ଏଥିରୁ ଜଣାଯାଏ ଯେ କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଶାର ଏକତ୍ରୀକରଣ ପାଇଁ କିପ୍ରକାର ପରିଶ୍ରମ କରିଥିଲେ । ତାଙ୍କର ପରିଶ୍ରମର ଫଳ ସ୍ୱରୂପ ଆଜି ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମୁଣ୍ଡ ଟେକି ଠିଆ ହୋଇପାରିଅଛି ।

କୃଷ୍ଣଚନ୍ଦ୍ର ଗଜପତିଙ୍କର ବାପା ଏବଂ ଦାଦା ଓଡ଼ିଶାର ବିଚ୍ଛିନ୍ନାଞ୍ଚଳକୁ ଏକାଠି କରି ଗୋଟିଏ ଶାସନାଧିନରେ ରଖିବା ପାଇଁ ଯେଉଁ ସ୍ୱର ଉତ୍ତୋଳନ କରିପାରିଥିଲେ, କୃଷ୍ଣଚନ୍ଦ୍ର ଗଜପତି ତାକୁ କାର୍ଯ୍ୟରେ ପରିଣତ କରିବାରେ ସକ୍ଷମ ହୋଇପାରିଥିଲେ ।

୧୯୩୪ ସାଲ ନଭେମ୍ବର ମାସରେ ଜଏଣ୍ଟ ସିଲେକ୍ଟ କମିଟିର ବିଶଦ ବିବରଣୀ ପ୍ରକାଶ ପାଇଲା । ଏହାକୁ ଭିତ୍ତିକରି ୧୯୩୫ ସାଲ ଫେବୃୟାରୀ ମାସରେ ବ୍ରିଟିଶ ହାଉସ୍ ଅଫ୍ କମନରେ ଏକ ବିଲ୍ ଅଣାଗଲା ଏବଂ ଏହା ୧୯୩୫ ସାଲ ଅଗଷ୍ଟ ୪ ତାରିଖରେ ଏକ ଆଇନ ଭାବେ ଗୃହୀତ ହେଲା । ଯାହାକୁ ଆମେ ୧୯୩୫ ସାଲର ଭାରତ ସରକାରଙ୍କର ନିୟମ କହୁ । ଏହି ନିୟମ ଅନୁଯାୟୀ ୧୧ଟି ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଗଲା । ତନ୍ମଧ୍ୟରୁ ଓଡ଼ିଶା ୧୯୩୬ ସାଲ ଏପ୍ରିଲ ୧ ତାରିଖରେ ସ୍ୱତନ୍ତ୍ର ପ୍ରଦେଶ ରୂପେ ଘୋଷିତ ହେଲା । ଏହା ମାତ୍ର ୬ ଗୋଟି ଜିଲ୍ଲାକୁ ନେଇ ଗଠନ କରାଗଲା । ସେଗୁଡ଼ିକ ହେଲା କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର,

ଫଗ୍ରାମ ଏବଂ ଜୋଗପୁଟ । ଗଜପତିଙ୍କର ସ୍ୱପ୍ନ ସାକାର ହେଲା । ଏହା ସ୍ୱପ୍ନ ନଥିଲା ଜଣେ ବ୍ୟକ୍ତିଙ୍କର, ଏହା ଥିଲା ଦୀର୍ଘ ୨୦ ବର୍ଷର ସ୍ୱପ୍ନ । ପୁଞ୍ଜୀଭୂତ ଶୋଷଣ, ଅନ୍ୟାୟ, ଅତ୍ୟାଚାର, ଅଶାନ୍ତି, ଅବହେଳା ଲକ୍ଷ ଲୋକର ପରିପ୍ରକାଶ ମାତ୍ର । କିନ୍ତୁ କୃଷ୍ଣଚନ୍ଦ୍ର ଗଜପତିଙ୍କର ଏହି ଗୌରବମୟ ସ୍ୱପ୍ନର ସଫଳତା ଦେଖିବାକୁ ମଧୁସୂଦନ କିମ୍ବା ଗୋପବନ୍ଧୁ ଆଉ ଇହଧାମରେ ନଥିଲେ । କିନ୍ତୁ ଅଗଣିତ ଓଡ଼ିଆ ସଂସ୍କୃତି ଭାଷା ଏବଂ ଜନ୍ମମାଟି ସ୍ୱତନ୍ତ୍ର ସତ୍ତା ଫେରିପାଇ ଉଦ୍‌ଭାସିତ ହୋଇ ଉଠିଲା ।

ସାର୍ ଜନ୍ ଅଷ୍ଟିନ୍ ହବାକ୍ ନୂତନ ଓଡ଼ିଶାର ପ୍ରଥମ ରାଜ୍ୟପାଳ ହେଲେ । ସେତେବେଳେର ବିହାର ଏବଂ ଓଡ଼ିଶାର ତତ୍‌କାଳୀନ ମୁଖ୍ୟ ବିଚାରପତି ସାର୍ କର୍ଟନି ଟେରେଲ ପ୍ରଥମ ଲାଟପାଳଙ୍କ ଶପଥ ପାଠ କରାଇଲେ । ଏହି ଶପଥ ପାଠ ଉତ୍ସବକୁ ବ୍ରିଟିଶ ରାଜା ଏକ ଅଭିନନ୍ଦନ ବାର୍ତ୍ତା ପଠାଇଲେ । ସେଥିରେ କୁହାଯାଇଥିଲା ଯେ, ୧୯୩୫ ସାଲର ଭାରତ ସରକାରଙ୍କ ନିୟମ ଅନୁଯାୟୀ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଓଡ଼ିଶା ହେଉଛି ପ୍ରଥମ । ମୁଁ ଆଶାକରେ ଏହା ସମୃଦ୍ଧିଶାଳୀ ହେଉ ଏବଂ ଐତିହାସିକ ପରମ୍ପରାକୁ ନେଇ ଏହା ଏକ ପବିତ୍ର ଭୂମି ରୂପରେ ଗଢ଼ି ଉଠୁ ।

ଏହିପରି ବିଭିନ୍ନ ଜାଗାରୁ ବିଭିନ୍ନ ପ୍ରକାର ଅଭିନନ୍ଦନ ବାର୍ତ୍ତାମାନ ଆସି ପହଞ୍ଚିଥିଲା ।

୧୯୩୬ ସାଲ ଏପ୍ରିଲ ୧ ତାରିଖ ଓଡ଼ିଶାର ଅଧ୍ୟାୟରେ ଏକ ନୂତନ ଇତିହାସ ସୃଷ୍ଟି ହେଲା । ସେହି ଶୁଭ ଅବସରର ସନ୍ଧ୍ୟାରେ କୃଷ୍ଣଚନ୍ଦ୍ର ଗଜପତି ଏକ ଭୋଜିସଭା କଟକର ଐତିହାସିକ ଫୋର୍ଟ ବାରବାଟୀଠାରେ ଆୟୋଜନ କଲେ । ଉକ୍ତ ସଭାରେ ହଜାର ହଜାର ଭଦ୍ର ବ୍ୟକ୍ତି ଆସି ଯୋଗ ଦେଇଥିଲେ । ଏଥିରୁ ଜଣାଯାଏ ଯେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଘୋଷଣାପରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ଆନନ୍ଦର ସୀମା କେତେ ଉଚ୍ଚକୁ ବଢ଼ି ଯାଇଥିଲା ।

ଏହି ସ୍ୱତନ୍ତ୍ର ପ୍ରଦେଶ ଗଠନ ପଛରେ କୃଷ୍ଣଚନ୍ଦ୍ର ଗଜପତିଙ୍କର ଉଦ୍ୟମ ଏବଂ ଅବଦାନ ଉଲ୍ଲେଖନୀୟ ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ହୋଇସାରିବା ପରେ ବହୁତ ସ୍ଥାନରେ ସଭାସମିତିମାନ କରି କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା । ଗଞ୍ଜାମ ଜିଲ୍ଲାର ପୁରୁଷୋତ୍ତମପୁର ସମ୍ବର୍ଦ୍ଧନା ସଭାରେ ଭାଷଣଦେବାକୁ ଯାଇ କୃଷ୍ଣଚନ୍ଦ୍ର ଗଜପତି କହିଲେ ଯେ :—"ଓଡ଼ିଶା ପାଇଁ ମୁଁ ଯାହା କରିଛି ତାହା ମୋର କର୍ତ୍ତବ୍ୟ ଥିଲା" । ସେ ପୁଣି କହିଲେ ଯେ ମୋର ସମ୍ମାନନୀୟ ପୂର୍ବ ପୁରୁଷଙ୍କର ଅଦୃଶ୍ୟ ଶକ୍ତି ମୋର ପଛରେ ରହିଥିବା ଯୋଗୁଁ ହିଁ ଏହା ସମ୍ଭବ ହୋଇ ପାରିଲା ।"

୧୯୩୫ ସାଲ ଭାରତର ନିୟମ ଅନୁଯାୟୀ ୧୧ଟି ନୂତନ ପ୍ରଦେଶର ପ୍ରଧାନ ସଭା ସ୍ୱତନ୍ତ୍ର ଭାବରେ ଗଠିତ ହେଲା । ଓଡ଼ିଶାରେ ୬୦ଟି ସ୍ଥାନ ବିଶିଷ୍ଟ ଏକ ପ୍ରଧାନ ସଭା ଗଠିତ କରାଗଲା । ସେହି ସ୍ଥାନ ଗୁଡ଼ିକୁ ବିଭିନ୍ନ ଗୋଷ୍ଠି ମଧ୍ୟରେ ବିଭକ୍ତ କରାଗଲା ।

ଏହି ପରିପ୍ରେକ୍ଷୀରେ କୃଷ୍ଣଚନ୍ଦ୍ର ଗଜପତି ଜାତୀୟ ଦଳ ନାମରେ ଏକ ଦଳ ଗଠନ କଲେ । କିନ୍ତୁ କଂଗ୍ରେସ ଦଳ ୧୯୩୫ ସାଲର ଭାରତ ସରକାରଙ୍କ ଆଇନ ଅନୁଯାୟୀ ଏହି ଦଳକୁ କୌଣସି ସ୍ୱାଧୀନତା ଦିଆଯିବ ନାହିଁ ବୋଲି ଘୋଷଣା କଲେ । ତଥାପି କଂଗ୍ରେସଦଳ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କଲା । ଏବଂ ଦୁଇ ତୃତୀୟାଂଶ ଭୋଟ ପାଇ ସଂଖ୍ୟା ଗରିଷ୍ଠତା ହାସଲ କଲା ।

ତଥାପି ଯେଉଁ ପର୍ଯ୍ୟନ୍ତ ରାଜ୍ୟପାଳଙ୍କ ହାତରେ ସ୍ୱତନ୍ତ୍ର କ୍ଷମତା ନିହିତ ରହିଅଛି ସେ ପର୍ଯ୍ୟନ୍ତ କଂଗ୍ରେସ ତାର କୌଣସି ରାଜ୍ୟରେ କ୍ଷମତାରେ ରହିବ ନାହିଁ ବୋଲି ନିଷ୍ପତ୍ତି ନେଲା । ଏହା ଫଳରେ ପ୍ରତ୍ୟେକ ରାଜ୍ୟରେ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗୁଡ଼ିକ ଗଠିତ ହେଲା ।

ଓଡ଼ିଶାର ରାଜ୍ୟପାଳ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ମନ୍ତ୍ରିମଣ୍ଡଳୀ ଗଢ଼ିବା ପାଇଁ ଆମନ୍ତ୍ରଣ କଲେ । ୧୯୩୭ ସାଲ ଏପ୍ରିଲ ୧ ତାରିଖରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଏକ ତିନି ଜଣିଆ ମନ୍ତ୍ରିମଣ୍ଡଳ ଗଠିତ ହେଲା । ସେହି ମନ୍ତ୍ରିମଣ୍ଡଳରେ ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ଏବଂ ଲତିଫର ରହମାନ ମନ୍ତ୍ରୀ— ପଦରେ ରହିଲେ ।

କୃଷ୍ଣଚନ୍ଦ୍ର ଗଜପତି ଆଇନ୍, ବାଣିଜ୍ୟ, ପରେଶଇ ଏବଂ ଅର୍ଥ ବିଭାଗ ଦାୟିତ୍ୱରେ ରହିଲେ । ମାନଧାତା ଗୋଦାବରୀଶ ପଟ୍ଟନାୟକ ଶିକ୍ଷା ଏବଂ ରାଜସ୍ୱ ବିଭାଗ ଦାୟିତ୍ୱରେ ରହିଲେ ଏବଂ ଲତିଫର ରହମାନ ସ୍ଥାନୀୟ ସ୍ୱାୟତ୍ତ ଶାସିତ ସରକାର ଏବଂ ଜନ ସମୃଦ୍ଧ କାମ ଦାୟିତ୍ୱରେ ରହିଲେ । ମନ୍ତ୍ରିମାନଙ୍କର ଦରମା ହିସାବ ମାସିକ ଏକ ହଜାର ଟଙ୍କା ରଖାଗଲା ।

କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଶାର ପ୍ରଧାନମନ୍ତ୍ରୀ ପଦରେ ରହିଲେ । ପ୍ରଧାନମନ୍ତ୍ରୀ ପଦରେ ରହିବା ପରେ ପରେ ତାଙ୍କର ପୂର୍ବପୁରୁଷମାନେ ତିଆରି କରିଥିବା ପୁରୀ ଜଗନ୍ନାଥ ମନ୍ଦିର ପରିଦର୍ଶନରେ ଗଲେ । ସେଠାରେ ମନ୍ଦିରର ପଣ୍ଡାମାନଙ୍କ ଦ୍ୱାରା ତାଙ୍କୁ ବିପୁଳ ଅଭ୍ୟର୍ଥନା ଦିଆଗଲା ।

ତତ୍‌କାଳୀନ କଂଗ୍ରେସପାର୍ଟିର ନେତା ବିଶ୍ୱନାଥ ଦାସ କୃଷ୍ଣଚନ୍ଦ୍ର ଗଜପତିଙ୍କର ମନ୍ତ୍ରିମଣ୍ଡଳକୁ ସମାଲୋଚନା କରି ଏକ ବିବୃତ୍ତି ଦେଲେ । ପ୍ରାୟ ସମସ୍ତ ସମ୍ବାଦପତ୍ରମାନ କୃଷ୍ଣଚନ୍ଦ୍ର ଗଜପତିଙ୍କ ମନ୍ତ୍ରିମଣ୍ଡଳକୁ ସମାଲୋଚନା କରି ସମ୍ବାଦ ବାହାର କରିବାରେ ଲାଗିଲେ । ଯାହାଦ୍ୱାରା କଂଗ୍ରେସ ପାର୍ଟି ଏବଂ ଜନତା ସମୂହ ଅନୁଭବ କଲେ ଯେ, ଛ'ମାସ ମଧ୍ୟରେ ଆଉ ଏକ ନିର୍ବାଚନର ଆବଶ୍ୟକ ।

ମାନଧାତା ଗୋଦାବରୀଶ ପଟ୍ଟନାୟକ ରାଜସ୍ୱ ବିଭାଗମନ୍ତ୍ରୀ ହିସାବରେ ଏକ ବିବୃତ୍ତିରେ କହିଲେ ଯେ ଓଡ଼ିଶାର ଜନତାଗଣ ସରକାରଙ୍କ ସହିତ ପ୍ରତିକ୍ଷେତ୍ରରେ ସହଯୋଗ କରିବା ଆବଶ୍ୟକ । ତାହା'ହେଲେ ଏହି ସରକାର ସଠିକ୍‌ଭାବରେ କାମ କରି ପାରିବ । ଶିକ୍ଷା ପ୍ରଣାଳୀ ବିଷୟରେ ସେ ବିବୃତ୍ତି ଦେଇ କହିଲେ ଯେ ଶିକ୍ଷା କ୍ଷେତ୍ରରେ ଶୀଘ୍ର ଉନ୍ନତି କରିବା ସମ୍ଭବପର ହୋଇ ପାରୁନାହିଁ । କାରଣ ଶିକ୍ଷା କ୍ଷେତ୍ରଗୁଡ଼ିକ ଏପର୍ଯ୍ୟନ୍ତ ଗୋଟିଏ ବିଶ୍ୱବିଦ୍ୟାଳୟ ଅଧୀନରେ ଆସିପାରିନାହିଁ । ଓଡ଼ିଶାର ସମସ୍ତ ଶିକ୍ଷାନୁଷ୍ଠାନ-ଗୁଡ଼ିକ ଦୁଇଟି ବିଶ୍ୱବିଦ୍ୟାଳୟ ମଧ୍ୟରେ ବାଣ୍ଟି ହୋଇ ରହିଅଛି । ଉତ୍ତର ଓଡ଼ିଶା ରହିଛି ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଏବଂ ଦକ୍ଷିଣ ଓଡ଼ିଶାର ଶିକ୍ଷାନୁଷ୍ଠାନ ରହିଛି ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଅଧୀନରେ ସେ ଏକ ପ୍ରସ୍ତାବ

ଦେଲେ ଯେ ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାର ଆବଶ୍ୟକ କିମ୍ବା ସମସ୍ତ ଶିକ୍ଷା କ୍ଷେତ୍ରକୁ ପାଟନା କିମ୍ବା ଆନ୍ଧ୍ର ଯେକୌଣସି ଗୋଟିଏ ବିଶ୍ୱବିଦ୍ୟାଳୟ ଅଧୀନରେ ରଖିବା ଆବଶ୍ୟକ ।

ଏହି ପରିପ୍ରେକ୍ଷୀରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ବାସଭବନରେ ଏକ ସଭାର ଆୟୋଜନ କରାଗଲା । ମନ୍ତ୍ରୀମାନଙ୍କ ବ୍ୟତୀତ ଉକ୍ତ ସଭାରେ ଅନ୍ୟାନ୍ୟ କେତେଜଣ ସଭ୍ୟ ମଧ୍ୟ ଯୋଗ ଦେଲେ ।

ଏହି ସଭାରେ ସ୍ଥିର କରାଗଲା ଯେ ତିନିଜଣ ମନ୍ତ୍ରୀଙ୍କ ସହିତ ବ୍ରଜସୁନ୍ଦର ଦାସ, ମୋହନଲାଲ ପଣ୍ଡିତ, ରାୟ ବାହାଦୂର, ଲୋକନାଥ ମିଶ୍ର ଉପେନ୍ଦ୍ର ମିଶ୍ର ଇତ୍ୟାଦିଙ୍କୁ ନେଇ ଏକ ଦୃଢ଼ ଅଣ କଂଗ୍ରେସ ଦଳ ଗଠିବା ପାଇଁ ଏକ କମିଟି ତିଆରି କରାଯିବ ।

ତିନିମାସ ଭିତରେ କୃଷ୍ଣଚନ୍ଦ୍ର ଗଜପତିଙ୍କର ମନ୍ତ୍ରିମଣ୍ଡଳ ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ଗଠନ କରିବା ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ପାଇଁ ତତ୍ପରତା ଦେଲେ । ୧୯୩୭ ସାଲ ଏପ୍ରିଲ ୨୪ ତାରିଖରେ ଏଫ : ଆର : ଉଚ୍ଚ ଶିକ୍ଷା ବିଭାଗର ସେକ୍ରେଟେରୀ, ଏସ: ପି: ତ୍ରିପାଠୀ, ଅଧ୍ୟକ୍ଷ ରେଭେନସା କଲେଜ, ଏମ୍. ପି. ପ୍ରଧାନ, ଅଧ୍ୟକ୍ଷ କଟକ ଟ୍ରେନିଂ କଲେଜ, ପି ମହାନ୍ତି ଅଧ୍ୟକ୍ଷ ଖଲ୍ଲିକୋଟ କଲେଜ, ପି ଜଗନ୍ନାଥ ସ୍ୱାମୀ, ଅଧ୍ୟକ୍ଷ ପାରଳାକେମୁଣ୍ଡି କଲେଜ, ପ୍ରଫେସର ପି. ପରିଜା ଏବଂ ଏଚ. ବି଼ପିଙ୍କୁ ନେଇ ଏକ କମିଟି ଗଠନ କରାଗଲା । ଏହି କମିଟିକୁ ନିର୍ଦ୍ଦେଶ ଦିଆଗଲା ଯେ ଓଡ଼ିଶା ପାଇଁ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସ୍ଥାପନ କରିବାର ଆବଶ୍ୟକତା ଅନୁଧ୍ୟାନ କରିବେ । ପି. ଜଗନ୍ନାଥ ସ୍ୱାମୀ ଯିଏକି ଏହି କମିଟିର ସଦସ୍ୟ ଥିଲେ ସେ କହିଲେ ଯେ ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟର ନିହାତି ଆବଶ୍ୟକ ।

କିନ୍ତୁ ଅର୍ଥ ବିଭାଗର ଦୁର୍ବଳତା ଯୋଗୁ ୧୯୩୭ ସାଲରେ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯାଇ ପାରିଲା ନାହିଁ ।

୧୯୩୭ ସାଲ ଜୁଲାଇ ୧୩ ତାରିଖରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ମନ୍ତ୍ରି-ମଣ୍ଡଳ କେତେଗୁଡ଼ିଏ ଅନିବାର୍ଯ୍ୟ କାରଣ ବଶତଃ ବରଖାସ୍ତ ହେଲେ ।

ବଡ଼ଲାଟଙ୍କ ନିଷ୍ପତ୍ତି କ୍ରମେ ଓଡ଼ିଶାର ରାଜ୍ୟପାଳ କଂଗ୍ରେସର ନେତା ବିଶ୍ୱନାଥ ଦାସଙ୍କୁ ମନ୍ତ୍ରିମଣ୍ଡଳ ଗଢ଼ିବା ପାଇଁ ଆହ୍ୱାନ କଲେ । ବିଶ୍ୱନାଥ ଦାସ ସ୍ଥାୟୀ ଭାବରେ ଏକ ତିନି ଜଣିଆ ମନ୍ତ୍ରିମଣ୍ଡଳ ଗଠନ କଲେ । ସେ ହେଲେ ପ୍ରଧାନ ମନ୍ତ୍ରୀ । ନିତ୍ୟାନନ୍ଦ କାନୁନ୍‌ଗୋ ଏବଂ ବୋଧରାମ ଦୁବେ ମନ୍ତ୍ରୀ ଭାବରେ ନିଯୁକ୍ତ ହେଲେ ।

ପରବର୍ତ୍ତୀ କାଳରେ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳ ମଧ୍ୟ ଭାଙ୍ଗି ଯାଇଥିଲା । କିଛି ଦିନ ପାଇଁ ରାଜ୍ୟପାଳଙ୍କ ଶାସନାଧୀନରେ ଓଡ଼ିଶା ଶାସିତ ହେଲା ।

୧୯୪୧ ସାଲ ଅକ୍ଟୋବର ୨୭ ତାରିଖରେ ସ୍ୱାଧୀନ ପାର୍ଟି ଦ୍ୱାରା ଆୟୋଜିତ ଏକ ସଭାରେ ନିଷ୍ପତ୍ତି ନିଆଗଲା ଯେ ପାରଳାଖେମୁଣ୍ଡି ମହାରାଜା ହିଁ ମୁଖ୍ୟମନ୍ତ୍ରୀ ହେବା ଆବଶ୍ୟକ ।

୧୯୪୧ ସାଲ ନଭେମ୍ବର ମାସ ତିନି ତାରିଖରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ପୁଣି ମନ୍ତ୍ରିମଣ୍ଡଳ ଗଠନ କରାଗଲା । ସେହି ମନ୍ତ୍ରିମଣ୍ଡଳରେ କୃଷ୍ଣଚନ୍ଦ୍ର ଗଜପତି ରହିଲେ ପ୍ରଧାନମନ୍ତ୍ରୀ, ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ମୌଲବି ଶୁଭାନ୍ ଖାଁ ଦୁଇ ଜଣ ରହିଲେ ମନ୍ତ୍ରୀ ପଦରେ । ପ୍ୟାରି ଶଙ୍କର ରାୟ ରହିଲେ ପାର୍ଲ୍ୟାମେଣ୍ଟାରି ସେକ୍ରେଟେରୀ ଭାବରେ ।

ଓଡ଼ିଶାର ଦ୍ୱିତୀୟ ରାଜ୍ୟପାଳ ହାର୍‌ଥ୍ୱାର୍ଣ୍ଣ ଲେଓ୍ୱିସ କୃଷ୍ଣଚନ୍ଦ୍ର ଗଜପତିଙ୍କ ମନ୍ତ୍ରିମଣ୍ଡଳକୁ ଶପଥ ପାଠ କରାଇଲେ । କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଦ୍ୱିତୀୟଥର ମନ୍ତ୍ରିମଣ୍ଡଳ ଗଠିତ ହୋଇଥିବାରୁ ଓଡ଼ିଶାରେ ଚହଳ ସୃଷ୍ଟି ହୋଇଗଲା ।

ମନ୍ତ୍ରୀତ୍ୱ ପଦରେ ଶପଥ ନେବାପରେ ତାଙ୍କର ସ୍ୱାଗତ ଭାଷଣରେ କୃଷ୍ଣଚନ୍ଦ୍ର ଗଜପତି କହିଲେ ଯେ ଓଡ଼ିଶାର ଲୋକମାନଙ୍କର ସୁବିଧା ଅସୁବିଧା ପ୍ରତି ସେ କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବେ ।

ଅର୍ଥ ମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ ଭାଷଣରେ କହିଲେ ଯେ ଯେଉଁ ପର୍ଯ୍ୟନ୍ତ ଓଡ଼ିଶାରେ ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସ୍ଥାପନ କରା-ନ ହୋଇଛି ସେ ପର୍ଯ୍ୟନ୍ତ ଶିକ୍ଷା ବିଭାଗରେ କିଛି ହେଲେ ଉନ୍ନତି ହୋଇ ପାରିବ ନାହିଁ । ସେ ସଦସ୍ୟମାନଙ୍କୁ ନିବେଦନ କରି କହିଲେ ଯେ ସେମାନେ ଆମର ଏକ ନିଜସ୍ୱ ବିଶ୍ୱବିଦ୍ୟାଳୟ ଗଠନ ଦିଗରେ ଉଦ୍ୟମ କରିବା ଉଚିତ ।

ଓଡ଼ିଶା ବିଧାନ ସଭାର ଜଣେ ସଦସ୍ୟ ବ୍ରଜକିଶୋର ଦେହେରି କହିଲେ ଯେ ଓଡ଼ିଶାର ଅବହେଳିତ ଲୋକମାନଙ୍କର ବହୁବିଧ ଉନ୍ନତି ଏବଂ ଦୁଃଖ ଦୁର୍ଦ୍ଦଶା ଦୂର କରିବା କେବଳ କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱ ଦ୍ୱାରାହିଁ ସମ୍ଭବପର ହୋଇ ପାରିବ ।

ରାଧାମୋହନ ପଣ୍ଡା, ବିଧାନ ସଭାର ଅନ୍ୟ ଜଣେ ସଦସ୍ୟ ତାଙ୍କ ବକ୍ତୃତାରେ କହିଲେ ଯେ ଓଡ଼ିଶା ପ୍ରଦେଶ ଗଠନର ଉନ୍ନତି ତଥା କୃଷି କ୍ଷେତ୍ରରେ ଏବଂ ବନ୍ୟା ଦୁର୍ଗତ ଅଞ୍ଚଳକୁ ସୁଧାରିବାକୁ ହେଲେ କୃଷ୍ଣଚନ୍ଦ୍ର ଗଜପତିଙ୍କ ଭଳି ଜଣେ ପୁରୁଷ ଏବଂ ବିଜ୍ଞ ନେତାଙ୍କର ସହଯୋଗ ଆବଶ୍ୟକ । ନୂତନ ଓଡ଼ିଶା ପ୍ରଦେଶ ଜନ୍ମ ନେଇଛି ତାଙ୍କର ଶ୍ରମ ବିନିଯୋଗରେ ଯିଏ ଜନ୍ମ ଦେଇଛି, ସିଏ ନିଶ୍ଚୟ ରୁଚି ଦେବାକୁ ସକ୍ଷମ ହେବ ।

କୃଷ୍ଣଚନ୍ଦ୍ର ଗଜପତିଙ୍କ ସରକାର କୃଷି କ୍ଷେତ୍ରରେ ଉନ୍ନତି କରିବା ପାଇଁ ବହୁତ ଧ୍ୟାନ ଦେଉଥିଲେ । ଏହି ପରିପ୍ରେକ୍ଷୀରେ ଅଜସ୍ର ପଇସା ମଧ୍ୟ ଖର୍ଚ୍ଚ କରୁଥିଲେ । କୃଷି କ୍ଷେତ୍ରରେ ଉନ୍ନତି ପାଇଁ ତାଙ୍କ ସରକାରଙ୍କର ଉଦ୍ୟମରେ ୪, ୪୬, ୦୦୦ ଏକର ଜମିରେ ଉତ୍କୃଷ୍ଟ ଜଳସେଚନ ପାଇଁ କେନାଲର ବ୍ୟବସ୍ଥା କରିଥିଲେ । ଏତଦ୍‌ବ୍ୟତୀତ କେତେଗୁଡ଼ିଏ ଜଳାଶୟର ବ୍ୟବସ୍ଥା ମଧ୍ୟ କରିଥିଲେ ।

ତାଙ୍କ ସରକାର ବନ୍ୟା ସମସ୍ୟା ଦୂର କରିବା ପାଇଁ ଏକ କମିଟି ଗଠନ କରିଥିଲେ ।

କୃଷ୍ଣଚନ୍ଦ୍ର ଗଜପତିଙ୍କ ରାଜତ୍ୱ କାଳରେ ତାଙ୍କ ପ୍ରତି କ୍ଷେତ୍ରରେ ତାଙ୍କର ବିପକ୍ଷ ବାଦୀମାନେ ସମାଲୋଚନା କରୁଥିଲେ । କିନ୍ତୁ ଦୃଢ଼ମନା କୃଷ୍ଣଚନ୍ଦ୍ର ଗଜପତି ସମସ୍ତର ଉତ୍ଥାନ ପତନରେ ବିଚଳିତ ନ ହୋଇ ନିର୍ଭିକ ଭାବେ ମୁକାବିଲା କରୁଥିଲେ । ଏହିପରି ବିଷମ ସମସ୍ୟାର ମୁକାବିଲା କରିବା ପାଇଁ ତାଙ୍କ ଚରମ ଉତ୍ସାହ ସହିତ ଓଡ଼ିଶା ଜନନୀ ଜନ୍ମଭୂମି ପାଇଁ ଗୋଟିକପରେ ଗୋଟିଏ କାର୍ଯ୍ୟ କରିବା ଦିଗରେ ତାଙ୍କର ସମକକ୍ଷ ବ୍ୟକ୍ତି ଏପର୍ଯ୍ୟନ୍ତ ଦେଖାଯାଇ ନାହିଁ । କୃଷ୍ଣଚନ୍ଦ୍ର ଗଜପତି କିଛି ନକାଳେ ସ୍ୱାର୍ଥି ପଛ ନଥିଲେ । ଓଡ଼ିଶାର ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ୧୯୪୨ ସାଲର ବିଶ୍ୱ ବିଦ୍ୟାଳୟ ବିଲ ୧୯୪୩ ସାଲ ଜୁନ ମାସ ୩୦ ତାରିଖରେ ଓଡ଼ିଶା ବିଧାନସଭାରେ ଆଗତ କଲେ । ପ୍ରଧାନମନ୍ତ୍ରୀ କୃଷ୍ଣଚନ୍ଦ୍ର ଗଜପତି ଏହି ଦିନଟିକୁ ଓଡ଼ିଶା ପାଇଁ ଏକ ସ୍ମରଣୀୟ ଦିବସ ଭାବେ ଘୋଷଣା କରିଥିଲେ । ଓଡ଼ିଶାରେ ଏକ ସ୍ୱତନ୍ତ୍ର ବିଶ୍ୱ ବିଦ୍ୟାଳୟ ଗଠନ କରାଯାଉଥିବାରୁ ସେ ଅତ୍ୟାଧିକ ଆନନ୍ଦ ଅନୁଭବ କଲେ ।

କୃଷ୍ଣଚନ୍ଦ୍ର ଗଜପତି ପ୍ରଧାନମନ୍ତ୍ରୀ ପଦରେ ରହିବା ସମୟଠାରୁ ସେ ଯାହା ଦରମା ପାଉଥିଲେ ଏବଂ ଯାହା ଗସ୍ତ ଭତ୍ତା ପାଉଥିଲେ ସେ ସବୁ ଉତ୍କଳ ବିଶ୍ୱ ବିଦ୍ୟାଳୟର ଉନ୍ନତିପାଇଁ ଦାନ କରିଥିଲେ । ସେ ବିଧାନସଭାରେ ଏକ ବକ୍ତୃତା ଦେଇ କହିଥିଲେ ଯେ, ଶିକ୍ଷାର ପ୍ରସାର ହେଉଛି ସବୁଠାରୁ ଆମ ଜୀବନର ପ୍ରଧାନ ଅଂଶ । ଗୋଟିଏ ଗୋଷ୍ଠୀ କିମ୍ବା ଗୋଟିଏ ଜାତିର ପରିବର୍ତ୍ତନ ଶିକ୍ଷାର ପ୍ରସାରରୁ ହିଁ ସମ୍ଭବ ପର ହୁଏ ।

୧୯୪୪ ସାଲରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଗଲା । ପରେ ଏହିଭଳି ତାଙ୍କର ମନ୍ତ୍ରିମଣ୍ଡଳ ଅମଳରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବହୁ ଶିକ୍ଷା ଅନୁଷ୍ଠାନର ପ୍ରତିଷ୍ଠା ହେଲା ।

ଆଧୁନିକ ଶିକ୍ଷାର ପ୍ରସାର ଦିଗରେ ସେ ଯେତିକି ଆଗ୍ରହୀ ଥିଲେ, ପ୍ରାଚୀନ ସଂସ୍କୃତ ଶିକ୍ଷାର ପ୍ରସାର ଦିଗରେ ମଧ୍ୟ ସେ ସେତିକି ଆଗ୍ରହୀ ଥିଲେ । ପାରଳାଖେମୁଣ୍ଡିରେ ସେ ଏକ ସଂସ୍କୃତ କଲେଜ ମଧ୍ୟ ପ୍ରତିଷ୍ଠା କରିଥିଲେ ।

୧୯୪୪ ସାଲ୍ ମେ ମାସରେ ଓଡ଼ିଶା ପାର୍ଲ୍ୟାମେଣ୍ଟାରୀ ପାର୍ଟି ନାମରେ ଗୋଟିଏ ଦଳ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ନେତୃତ୍ୱରେ ଗଠନ ହେଲା । ସେହି ଦଳରେ ଦିବାକର ପଟ୍ଟନାୟକ ରହିଲେ ସେକ୍ରେଟେରୀ । ଏହି ଦଳ ଯୋଗୁ କୃଷ୍ଣଚନ୍ଦ୍ର ଗଜପତିଙ୍କ ମନ୍ତ୍ରିମଣ୍ଡଳରେ ବାଧା ସୃଷ୍ଟି ହେଲା । ବିଶୃଙ୍ଖଳା ଦେଖା ଦେଲା । ଏଣୁ ୧୯୪୪ ସାଲ୍ ଜୁନ୍ ମାସ ଶେଷରେ କୃଷ୍ଣଚନ୍ଦ୍ର ଗଜପତି ତାଙ୍କର ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏକାଧାରରେ ଶାସକ, ଜାତି ସଙ୍ଗଠକ, ସାହିତ୍ୟ– ସଂସ୍କୃତିର ପୃଷ୍ଠପୋଷକ, ଶିକ୍ଷାପ୍ରେମୀ ଏବଂ ଦାନୀ ଥିଲେ । ତାଙ୍କର ବ୍ୟକ୍ତିତ୍ୱ ଥିଲା ପ୍ରତିଭାମୟ । ଏହା ଥିଲା ବହୁବିଧ ଗୁଣର ସମାହାର । ସେ ଅତ୍ୟନ୍ତ ମିଷ୍ଟାଳାପୀ, ପ୍ରଜା ବତ୍ସଳ ଓ ସତ୍ୟ ପ୍ରିୟ ନେତୃତ୍ୱମୟ ବ୍ୟକ୍ତି ଥିଲେ ।

୧୯୧୩ ସାଲରେ ବିଶ୍ୱ ଯୁଦ୍ଧରେ ବ୍ରିଟିଶ୍ ସରକାରଙ୍କୁ ଯେଉଁ ସାହାଯ୍ୟ ଏବଂ ସହଯୋଗ କରିଥିଲେ ତାହା ଉଲ୍ଲେଖଯୋଗ୍ୟ । ବିଶେଷ କରି ସେ ବ୍ରିଟିଶ ସରକାରଙ୍କ ଯୁଦ୍ଧ ପାଣ୍ଠିକୁ ତିନି ଲକ୍ଷ ଦଶ ହଜାର ଟଙ୍କା ଅର୍ଥ ଦାନ କରିଥିଲେ । ଏତଦ୍‌ବ୍ୟତୀତ ସେ ସୈନିକ ଭାବରେ ବ୍ରିଟିଶ୍ ସେନାମା ଭୁକ୍ତ ଥିଲେ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ମଧ୍ୟ ବ୍ରିଟିଶ ସରକାରଙ୍କୁ ସେ ସାହାଯ୍ୟ କରିଥିଲେ । ସେ ପ୍ରାଦେଶିକ ଯୁଦ୍ଧ ସାମ୍ମୁଖ୍ୟରେ ସଭାପତି ଥିଲେ । ମାନ୍ଦ୍ରାଜ ପ୍ରଦେଶ ଯୁଦ୍ଧ ସାମ୍ମୁଖ୍ୟର ସେ ମଧ୍ୟ ସଭ୍ୟ ଥିଲେ । ଗୋଟିଏ ଲଢୁଆ ବିମାନ କିଣିବା ପାଇଁ ବ୍ରିଟିଶ ସରକାରଙ୍କୁ ସେ ପାଞ୍ଚହଜାର ପାଉଣ୍ଡ ଅର୍ଥଦାନ କରିଥିଲେ । ମହାରାଜାଙ୍କର ଏତାଦୃଶ୍ୟ ଦାନକୁ ବ୍ରିଟିଶ ଦରବାରରେ ଭୂୟସୀ ପ୍ରଶଂସା କରାଯାଇଥିଲା ।

୧୯୪୭ ସାଲରେ K. C. I. E. ଉପାଧି ଏବଂ ଉତ୍କଳ ଓ ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟ ତରଫରୁ L. L. D ଉପାଧିରେ ଭୂଷିତ ଏକ ପ୍ରଜ୍ଞାଶୀଳ ବ୍ୟକ୍ତି ଭାବରେ ନିଜକୁ ପରିଚିତ କରିପାରିଥିଲେ ।

୧୯୫୪ ସାଲରେ ହିନ୍ଦୁସ୍ଥାନ ଷ୍ଟିଲ ଲିମିଟେଡ୍‌ର ଡାଇରେକ୍ଟର ରୂପେ କେନ୍ଦ୍ର ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ । ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେ ଥିଲେ ଜଣେ ଆଧୁନିକ ଚିନ୍ତକ କର୍ମଠ ବ୍ୟକ୍ତି । କୃଷି ପ୍ରତି ଉନ୍ନତ ପ୍ରଣାଳୀ ବିନିଯୋଗ କରିବା ଥିଲା ତାଙ୍କର ପରମ ବ୍ରତ ।

ସେହି ସ୍ୱନାମଧନ୍ୟ ହିମାଦ୍ରିମାନ ଓଡ଼ିଆ ଦେଶ ଓ ଜାତି ପ୍ରେମୀ ମହାରାଜାଙ୍କର ଅବସାନ ଘଟିଲା ୧୯୭୪ ସାଲ ମେ ମାସ ୫ ତାରିଖରେ । ସେ ଆଜି ଆଉ ସଂସାରରେ ନାହାନ୍ତି ସତ; କିନ୍ତୁ ତାଙ୍କର ଗୁଣଗାରିମା ତଥା କୀର୍ତ୍ତିଗୁଡ଼ିକ ଆମେ ମନେପକାଉ ଏବଂ ଆମ ଆଖି ଆଗରେ ସେହିଗୁଡ଼ିକ ଗୋଟି ଗୋଟି ହୋଇ ଭାସି ଉଠେ । ତାଙ୍କର ଏହିସବୁ ଅମ୍ଳାନ କୀର୍ତ୍ତିରାଶି ସବୁଦିନ ପାଇଁ ଏହି ଧରାପୃଷ୍ଠରେ ତଥା ଓଡ଼ିଶା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ଏବଂ ସେ ଆମ ପାଇଁ ଏକ ଯୁଗାନ୍ତକାରୀ ବ୍ୟକ୍ତି ହୋଇ ରହିବେ ।